ପ୍ରକାଶକ
ଲର୍କବୁକ୍‌ସ
ଷ୍ଟେସନ ରୋଡ଼, କଟକ-୨

ପ୍ରଥମ ପ୍ରକାଶ
୧୯୮୩

ପ୍ରଚ୍ଛଦଶିଳ୍ପୀ
ଅସୀମ ବସୁ

ମୁଦ୍ରଣ
ଶ୍ରୀଲକ୍ଷ୍ମୀ ପ୍ରିଣ୍ଟର୍ସ
ଭୁବନେଶ୍ୱର-୯

ପନ୍ଦରଟଙ୍କା

*JANE RAJA THILE Written by Bijay Mishra and published by LARK BOOKS, Cuttack*- 753002

*Price Rs* 15.00

# ରାଜା ଯେତେବେଳେ ରାଜା ନ ଥିଲେ

ରାଜାମାନଙ୍କୁ ନେଇ କିଛି ଲେଖିବାର ଇଚ୍ଛା ଥିଲା ଅନେକ ଦିନରୁ । ପ୍ରାୟ ଦଶବର୍ଷ ତଳେ ଏଇ କାହାଣୀରେ 'ଇତିହାସର ଯନ୍ତ୍ରଣା' ବୋଲି ଗୋଟିଏ ନାଟକ ଲେଖିଥିଲି, ଯାହା ନରେନ୍ଦ୍ରପୁର ଯାତ୍ରାଦଳରେ ବହୁଦିନ ଧରି ଅଭିନୀତ ହୋଇଥିଲା । ପୁଣି, ଦଶବର୍ଷ ପରେ 'ଏବଂ ଆମେ' ନାଟ୍ୟସଂସ୍ଥା ତରଫରୁ 'ଜଣେ ରାଜା ଥିଲେ' ଅଭିନୀତ ହେଲା । 'ଇତିହାସର ଯନ୍ତ୍ରଣା' ଏବଂ 'ଜଣେ ରାଜା ଥିଲେ'ର ସଂଯୋଗ ବା ସାଦୃଶ୍ୟ ଆଙ୍ଗିକ ନୁହେଁ, ଆତ୍ମିକ । ଦୁଇଟିଯାକ ନାଟକର ବକ୍ତବ୍ୟ ପ୍ରାୟ ସମାନ । କେବଳ ଯାତ୍ରା ମଞ୍ଚରୁ ଉଠିଆସିଲା ବେଳେ ତା'ର ପୋଷାକ ପରିପାଟୀରେ କିଛିଟା ପରିବର୍ତ୍ତନ ହୋଇଛି । କିନ୍ତୁ ଦୁଇଟିଯାକ ନାଟକରେ ରାଜାମାନେ ପ୍ରାୟ ସମାନ, ଏବଂ ଖାଲି ନାଟକ କାହିଁକି, ସବୁ ଯୁଗରେ, ସବୁ କାଳରେ, ସବୁଠାରେ ରାଜାମାନେ ଏକାପରି । ଅବଶ୍ୟ ଏଇଟା ମୋର ବିଶ୍ୱାସ । ଓଟମୁହାଁ, ଘୋଡ଼ାମୁହାଁ, ବଘମୁହାଁ, ମାଙ୍କଡ଼ମୁହାଁ ରାଜାମାନେ ଅଛନ୍ତି, ସ୍ଥାନ କାଳ ପାତ୍ର ପରିବେଶରେ ସେମାନଙ୍କ ମୁହଁ ଅଲଗା ଅଲଗା ହୋଇପାରେ, କିନ୍ତୁ ମୁକୁଟପିନ୍ଧା ରାଜାମାନେ ଅଲଗା ହୁଅନ୍ତି ନାହିଁ, ବଦଳନ୍ତି ନାହିଁ ।

'ଏବଂ ଆମେ' ନାଟ୍ୟସଂସ୍ଥା ଏହି ନାଟକ ନେଇ ଦିଲ୍ଲୀ, କଲିକତା, ରାଉରକେଲା ଇତ୍ୟାଦି ସହରମାନଙ୍କରେ ପରିବେଷଣ କରିଛନ୍ତି । ଅନେକ ପ୍ରଶଂସା ପାଇଛନ୍ତି । ପୁଣି ଫେବୃଆରୀ ପ୍ରଥମ ସପ୍ତାହ ୧୯୮୩ ମସିହାରେ ଏହି ନାଟକର ହିନ୍ଦୀ ରୂପାନ୍ତର ହୋଇ ବରୋଦାର ଗେଲ୍‌ଟେ ଇନ୍‌ଷ୍ଟିଚ୍ୟୁଟରେ ପରିବେଷଣ ହୋଇଯାଇଛି । ଏହାର ଅନୁବାଦ କରିଥିଲେ ଖାରବେଳ ସ୍ୱାଇଁ, ସେ ନିଜେ ମଧ୍ୟ ନିର୍ଦ୍ଦେଶନା ଦେଇଥିଲେ । ସେଠି ମଧ୍ୟ ଏ ନାଟକ ଉଚ୍ଚପ୍ରଶଂସିତ ହୋଇଥିଲା ।

ତେବେ ସେ ଯାହା ହେଉ, ଏ ନାଟକ କିଛି କିଛି ସୁନାମ ଅର୍ଜ୍ଜନ କରିପାରିଛି, ସେଥିପାଇଁ 'ଏବଂ ଆମେ'ର କଳାକାରମାନେ ମୂଳତଃ ଦାୟୀ । ସେମାନଙ୍କୁ ମୁଁ କୃତଜ୍ଞତା ଜଣାଉଛି । ତେବେ ଏ ନାଟକର ପ୍ରୟୋଗ ଏବଂ ଉପସ୍ଥାପନା ପଦ୍ଧତିରେ କିଛିଟା ସାଧୀନତା ଅବଲମ୍ବନ କରିବାକୁ ମୋର ଅନୁରୋଧ । ଏ ନାଟକ ଯେଉଁମାନେ ମଞ୍ଚସ୍ଥ କରିବେ, ସିଏ ନିର୍ଦ୍ଦେଶନା ଦେବେ ସେମାନେ ସେମାନଙ୍କର ନିଜ ପରିକଳ୍ପନାରେ ସଂପୂର୍ଣ୍ଣ ସ୍ୱାଧୀନ । କିନ୍ତୁ ପରିବେଷଣରେ ବ୍ୟତିକ୍ରମ ନ ରହିଲେ ନାଟକର

ନାଟକଟା ଷ୍ପଷ୍ଟ ହେବ ବୋଲି ମୋର ବିଶ୍ୱାସ । ବିଭିନ୍ନ ନିର୍ଦ୍ଦେଶକମାନଙ୍କ ପାଇଁ 'ଏବଂ ଆମେ'ର ପରିବେଷଣ ଏବଂ ପ୍ରୟୋଗଶୈଳୀ ବିଷୟରେ ମୁଁ ସୂଚନା ଦେଉଛି । ଅନ୍ୟ ନାଟକ ପରିବେଷଣ ବେଳେ ଏହା ଏକ guide-line ହିସାବରେ ସାହାଯ୍ୟ କରିପାରେ ।

ଏ ନାଟକର ସାମଗ୍ରିକ ପ୍ରୟୋଗ ପରିକଳ୍ପନା ଅସୀମ ବସୁଙ୍କର । ନିର୍ଦ୍ଦେଶନା ସଚ୍ଚିଦାସଙ୍କର ।

ପ୍ରୟୋଗ ପଦ୍ଧତି [ 'ଏବଂ ଆମେ' ଦ୍ୱାରା ଅନୁସୃତ ]

ମଂଚ : ସମଗ୍ର ମଂଚଟିରେ କୌଣସି ସେଟ୍ ବ୍ୟବହାର କରାଯାଇ ନ ଥିଲା । ମଂଚର ପଶ୍ଚାତ୍ ଭାଗ ( upstage ) ରେ ୬'×୬'×୪'ର ଗୋଟିଏ ସିଣ୍ଡି ବା ପ୍ଲାଟଫର୍ମ । ଦୁଇ ପାଖରେ ଉପରକୁ ଉଠିବାର ପାହାଚ । ପ୍ଲାଟଫର୍ମର ମଧ୍ୟ ଭାଗରେ ଦର୍ଶକଙ୍କ ଆଡ଼କୁ ଗୋଟିଏ ବିବର, ଯାହା ଭୂମିକୁ ସ୍ପର୍ଶ କରିଚି । ସେଇ ବିବରଟିକୁ ବନ୍ଦ କରିବା ପାଇଁ ଗୋଟିଏ ପର୍ଦ୍ଦା ଝୁଲୁଚି । ବିବରଟିରେ ଜଣେ ବା ଦୁଇଜଣ ଗୁଞ୍ଜୁରି ଗୁଞ୍ଜୁରି ରହିବା ଭଳି କରି ପାରିଲେ ଭଲ ଆୟତନ ହେବ ।

ରୂପସଜ୍ଜା : ମନ୍ତ୍ରୀ, ସେନାପତି, ସାଧବ, କଟୁଆଳ, ଦୂତ ମାନଙ୍କୁ ସର୍କସ୍‌ର ଜୋକର୍ ଭଳି ରୂପସଜ୍ଜା କରାଯିବ ( କିମ୍ବା ସାଧାରଣ ମଣିଷଠାରୁ ଭିନ୍ନ ଦେଖାଯାଇ ପାରିବା ଭଳି ରୂପସଜ୍ଜା କଲେ ଚଳିବ । ) ରାଜା ପାରମ୍ପରିକ ରାଜା । କେବଳ ତାଙ୍କ ମୁକୁଟଟି ଗ୍ରେଟ ଏବଂ ହାଲୁକା ହେବା ଉଚିତ, ଯେପରି ଖୁବ୍ ସହଜରେ ଖୋଲି ଯାଇପାରିବ ଏବଂ ଲଗା ଯାଇ ପାରିବ । ରାଣୀ, ଠିକ୍ ଗୋଟିଏ କଣ୍ଢେଇ ପରି ଦେଖାଯିବା ଉଚିତ । ଦେବୀ ଏବଂ ନିରଞ୍ଜନ-ଙ୍କର ରୂପସଜ୍ଜା ସାଧାରଣ । ଘୁମାରେ ଥିବା ଦଶଜଣ, ଠିକ୍ ଘୁମାରେ ରହୁଥିବା ବଣ ମଣିଷପରି ଦିଶୁଥିବେ ।

ପୋଷାକ : ରାଜାଙ୍କର ପାରମ୍ପାରିକ ପୋଷାକ । ମନ୍ତ୍ରୀ, ସେନାପତି, ସାଧବ, କଟୁଆଳ ଏବଂ ଦୂତଙ୍କର ଏକପ୍ରକାର ପୋଷାକ ।

ଜରଷ୍ଟନର ସାଧାରଣ ଗାଉନ୍ ପୋଷାକ । ଲୁମ୍ବାରେ ଥିବା ଡନଲେଙ୍କ ଅଖାଡରେ ଚାଇନ୍ ଭଳି ପୋଷାକ ଦିଆ-ଯାଇପାରେ । ରାଣୀଙ୍କର କଣ୍ଢେଇଭଳି ଘାଘରା ଓ ବ୍ଲାଉଜ୍ ଏବଂ ଦେବୀର ସନ୍ୟାସିନୀର ପୋଷାକ ।

ସଂଗୀତ : ସଂଗୀତ ଏ ନାଟକର ଏକ ବଡ଼ଦେ ଅଙ୍ଗ । ଏ ନାଟକରେ ଦୁଇଟି ଜାତୀୟ ସଂଗୀତ ରହିଛି । ତାର ସ୍ୱର ଏପରି ହେବା ଉଚିତ ଯେପରି ତାହା ଖୁବ୍ ସହଜରେ ବୋଲା ଯାଇପାରିବ । ସମଗ୍ର ନାଟକରେ କିଛି ପାଟେମୀରିକ ଯାହା ଏବଂ ପୁରୁଣା ବ୍ୟବହୃତ ସଂଗୀତର ସ୍ୱର ନାଟକର ମୂଡ୍ ଏବଂ ଗତିକୁ ଲକ୍ଷ୍ୟ ରଖି ଦିଆ ଯାଇପାରେ ।

ସମଗ୍ର ନାଟକର ମାଉଣ୍ଟିଂ, ଫାଣ୍ଟାସି ଏବଂ ପରୀକାହାଣୀ ବା ଲୋକକଥାର ପ୍ରଥା ଅନୁଯାୟୀ ହେଲେ ନାଟକର ଆଙ୍ଗିକ ସମୃଦ୍ଧ ହୋଇ ପାରିବ ।

ମାର୍ଚ୍ଚ—୧୯୮୩

ବିଜୟ ମିଶ୍ର

'ଏବଂ ଆମେ'ର ପରିବେଷଣ

# ଜଣେ ରାଜା ଥିଲେ

**ପ୍ରଥମ ଅଭିନୟ : ନଭେମ୍ବର ୬ ୧୯୮୧**

**ରବୀନ୍ଦ୍ର ମଣ୍ଡପ, ସନ୍ଧ୍ୟା ସାଢ଼େ ସାତଟା**

| | | |
|---|---|---|
| ରାଜା | — | ପ୍ରେମାଂଜନ ପଣ୍ଡା |
| ମନ୍ତ୍ରୀ | — | ବ୍ରଜ ମେହେର |
| ସେନାପତି | — | ଅଲେଖ ମହାନ୍ତି |
| ସାଧକ | — | ରାଜୁବୁ |
| ଭଟ୍ଟଅଳ | — | ବାସୁଦେବ ଓଝା |
| ହରଂଜନ | — | ରମାକାନ୍ତ ମହାପାତ୍ର |
| ଧୁରନ୍ଧର | — | ଲକ୍ଷ୍ମୀଧର/ବାଞ୍ଛା/ଚନ୍ଦ୍ରଧର |
| ବିଶାଳବାହୁ | — | ଭାସ୍କର ଜେନା |
| ବିଦ୍ୟାଧର | — | ଭାସ୍କର ମୂଦୁଲ |
| ଦୂତ ( ୧ ) | — | ପ୍ରଫୁଲ୍ଲ ମହାନ୍ତି |
| ଦୂତ ( ୨ ) | — | ପ୍ରଦୀପ ମହାନ୍ତି |
| ରାଣୀ | — | ଶ୍ରୀମତୀ ସଂଯୁକ୍ତା ଦେବୀ |
| ଦେବୀ | — | ଶ୍ରୀମତୀ ବିନ୍ଦୁ ଦେବୀ |
| ରୂପସଜ୍ଜା | — | ବାଞ୍ଛାନିଧି ପଟ୍ଟନାୟକ |
| ପରିକଳ୍ପନା | — | ବୌଦ୍ଧିଶ୍ୟାମ ମହାପାତ୍ର |
| ଆଲୋକ ପରିକଳ୍ପନା | — | ହରି ଦାସ |
| ମଂପାତ | — | ପ୍ରଫୁଲ୍ଲ ଦାସ |
| ଶବ୍ଦ | — | ଦେବର୍ଷି |
| ନିୟନ୍ତ୍ରଣ | — | ମଣ୍ଟୁ, ଶାନ୍ତନୁ |
| ସଙ୍ଗୀତ ନିର୍ଦ୍ଦେଶନା | — | ଚନ୍ଦ୍ରପ୍ରସାଦ ମହାନ୍ତି |
| ଆବହ | — | ଦେବୀ, ଶଶି, ପ୍ରଶାନ୍ତ, ବଜ୍ରେଶ୍ୱର, ଦୟାନିଧି, ଲୁଚୁ, ଚୈନ, ଡ଼. ଶ୍ରୀନିବାସ, ବ୍ରଜ, ଚନ୍ଦ୍ରଧର । |

ପ୍ରୟୋଗ ଓ

| | | |
|---|---|---|
| ପରିକଳ୍ପନା | — | ଅସୀମ ବସୁ |
| ନିର୍ଦ୍ଦେଶନା | — | ହରି ଦାସ |

ଅଝାଡ଼ ଜଙ୍ଗଲ । ଛୋଟ ବୁଦାବୁଦିଆ ଗଛରୁ କ୍ରମଶଃ ବଡ଼ ବଡ଼ ଗଛ, ଏବଂ ପଛରେ ଠିଆ ହୋଇଛି ପାହାଡ଼ । ପାହାଡ଼ର ଦେହରେ ଗୁମ୍ଫା ।

ସମୟ ପ୍ରାୟ ସନ୍ଧ୍ୟା । ଏଇ ମାତ୍ର ପାହାଡ଼ ସେପାଖରେ ସୂର୍ଯ୍ୟ ଡୁବି ଗଲେ । ଏଇ ମାତ୍ର ପକ୍ଷୀମାନଙ୍କର କାକଳୀ କ୍ରମଶଃ ନିସ୍ତବ୍ଧ ହେଲା । ଏଇମାତ୍ର ଗଛପତ୍ରର ଫାଙ୍କରୁ ଆଲୁଅ ଲିଭିଯାଇ ଅନ୍ଧାର ମାଡ଼ି ଆସିଲା । ସେଇ ଅନ୍ଧାର ସାଙ୍ଗରେ ଦେଖାଗଲା ଗୁମ୍ଫା ଭିତରୁ ଗୋଟିଏ ମୁହଁ କ୍ରମଶଃ ବାହାରକୁ ବାହାରି ଆସୁଛି । ଗୁମ୍ଫାର ଦ୍ୱାରଟି ଏତେ ଅଳ୍ପ ଉଚ୍ଚ ଯେ, ଠିଆ ହେବାର ଉପାୟ ନାହିଁ । ତେଣୁ ଲୋକଟି ହାତ ଉପରେ ଭର ଦେଇ ଘୁଷୁରି ଘୁଷୁରି ବାହାରକୁ ମୁଣ୍ଡ କାଢ଼ିଲା । ଚାରି-ଆଡ଼କୁ ଅନେଇଲା । ତା' ମୁହଁରେ ଭୟ ଏବଂ କ୍ଳାନ୍ତିର ଚିହ୍ନ । ତା' ସାଙ୍ଗେ ସାଙ୍ଗେ ଆଉ ଏକ ଅଭିବ୍ୟକ୍ତି । ସେ ଅଭିବ୍ୟକ୍ତି ବିସ୍ମୟର ।

କିଛି ସମୟ ଚାରିଆଡ଼କୁ ଚାହିଁ ସେ ସେହିପରି ଘୁଷୁରି ଘୁଷୁରି ପଦାକୁ ବାହାରିଲା । ତା'ପରେ ଗୁମ୍ଫା ଦ୍ୱାର ମୁହଁରେ ଠିଆ ହୋଇ ନିଜ ହାତ ଗୋଡ଼କୁ ଛୁଟି ଛୁଟି-ନିଜକୁ ପ୍ରସ୍ତୁତ କରୁଥିଲା । ତା'ର ଏ ଭଙ୍ଗୀରୁ ମନେ ହେଉଥିଲା, ଯେପରି ଅନେକ ଦିନ ପରେ ସେ ଅଣ୍ଟା ସଳଖି ସିଧା ହୋଇ ଠିଆ ହବାର ସୁଯୋଗ ଆଜି ପାଇଛି । ଅନେକ ଦିନ ପରେ ଖୋଲା ଆକାଶ ଆଉ ମୁକ୍ତ ପବନର ସ୍ପର୍ଶ ପାଇଛି । କିନ୍ତୁ ସେ ମାତ୍ର ଅଳ୍ପ-କ୍ଷଣ ପାଇଁ । ହଠାତ୍ ସେ ସନ୍ଦିଗ୍ଧ ହୋଇ ଉଠିଲା । ଆଖିରେ ମୁହଁରେ ଭୟ ଆଉ ଆତଙ୍କର ଚିହ୍ନ ଫୁଟି

ଉଠିଲା । ସେ ଦ୍ରୁତ ଗତିରେ ସେ ସ୍ଥାନ ଛାଡ଼ି ଆଗକୁ
ଆଗେଇବାକୁ ଲାଗିଲା । ଅସ୍ଥୁ ଅସ୍ଥୁ ସେ ମଞ୍ଚର
ସମ୍ମୁଖ ଭାଗରେ ଠିଆ ହୋଇ ପଡ଼ିଲା । ଏତେବେଳକୁ
ସେ ଧଇଁସଇଁ ହେଉଥିଲା । ମୁହଁରେ ଥିଲା ଭୟ ଓ
ଅତଂକର ଚିହ୍ନ । ସେ ଶ୍ରାନ୍ତ ଏବଂ ଭୀତ । ସେ ଯେପରି
କିଛି ବର୍ତ୍ତମାନ କହିବାକୁ ଚାହେଁ. ଯେପରି କୌଣସି
ସ୍ୱୀକାରୋକ୍ତି ବା ଜବାନବନ୍ଦୀ, ହୁଏତ ସମୟ ତା'
ପାଖରେ ବହୁତ କମ୍ । ତେଣୁ ସେ ତରତର କରି
ଦର୍ଶକମାନଙ୍କ ଉଦ୍ଦେଶ୍ୟରେ କହିବାକୁ ଲାଗିଲା ।

ନିରଂଜନ ॥ ମୁଁ ସେମାନଙ୍କ ପାଖରୁ ପଳେଇ ଆସିଛି । ସେମାନେ ମୋତେ ପାଠ ପଢ଼େଇ ପଣ୍ଡିତ କରିବାକୁ ଚାହୁଁଥିଲେ । ଯୁଦ୍ଧ ଶିଖେଇ ଯୋଦ୍ଧା, ଆଉ ରାଜନୀତି ଶିଖେଇ ନେତା । ସେମାନେ ଆସିଲେ ମୋତେ ଧରି ନେବେ । ପୁଣି ମୋତେ ପଣ୍ଡିତ ଯୋଦ୍ଧା ବା ନେତା କରିବାକୁ ଚେଷ୍ଟା କରିବେ ।

ଏକା ନିଃଶ୍ୱାସକେ ଏତେ ଗୁଡ଼ାଏ କଥା କହିସାରି ସେ
ଟିକିଏ ଦମ୍ ନେଲା । ଏବଂ ଏହି ଅବସରରେ ସେ
ତା' ସମ୍ମୁଖରେ ବସିଥିବା, ଏବଂ ତାକୁ ଚାହିଁଥିବା
ଦର୍ଶକମାନଙ୍କୁ ଭଲ କରି ନିରୀକ୍ଷଣ କରିବାର ସୁଯୋଗ
ପାଇଲା ।

ମୁଁ ଯଦି ଆପଣମାନଙ୍କ ଭିତରେ ମିଶିଯାଇ ପାରନ୍ତି, ସେମାନେ ଆଉ ମୋତେ ଖୋଜି ପାଆନ୍ତେ ନାହିଁ । କିନ୍ତୁ ମୁଁ ମିଶି ପାରିବି ନାହିଁ । କାହିଁକି ଜାଣନ୍ତି ? ଆପଣମାନଙ୍କ ମୁହଁ ଆଉ ମୋ' ମୁହଁ ସମାନ ନୁହେଁ । ଆପଣମାନେ ସମସ୍ତେ ଓଟପରି ଦେଖା ଯାଉଛନ୍ତି । ଆଉ ମୁଁ ? ବହୁତ ଦିନ ହେଲା ମୋ' ମୁହଁ ମୁଁ ଦେଖିନି । ଏବେ ମୋ'ର ମନେ ହଉଛି, ହୁଏତ ମୋ' ମୁହଁଟା ମଣିଷର ମୁହଁପରି ହୋଇଥିବ । ମୁଁ ଦେଖିପାରୁଛି ଆପଣ-ମାନଙ୍କ ପିଠିରେ ଗୋଟାଏ ଗୋଟାଏ ବିରାଟ କୁଜ । ଆପଣ-ମାନେ ଆଖି ଦରବୁଜା କରି ପାକୁଳି କରୁଛନ୍ତି । କ'ଣ ପାକୁଳି

କରୁଚନ୍ତି, ତା' ବି କହୁଦେବି । କଣ୍ଟା ସିଝୁ ମୁହଁରେ ପୁରେଇ ଦେଉଚନ୍ତି । ନାହିଁ ଆଜ୍ଞା, ଖାଲି ଆପଣମାନେ ନୁହନ୍ତି । ଏ ରାଜ୍ୟଟା ସାରା ଏଇୟା କରୁଚନ୍ତି ।

ଓଟମୁହାଁ ଲୋକ, ପିଠିରେ କୁଜ, ପାଟିରେ କଣ୍ଟା ସିଝୁ ଦେଖିବା ଗୃଳାଚ ତ ଗୃ-ଳା-ଚି ।

ଅହାରେ ! ମୁଁ ଯଦି ସେମିତି ହୋଇପାରନ୍ତି !

ହଠାତ୍ ସେ ଗାଇବାକୁ ଆରମ୍ଭ କଲା । ଓଟ ପରି ନଇଁ ନଇଁ, ଘୂରି ଘୂରି ନାଚି ନାଚି ସେ ଗାଉଥିଲା ।

ନିରଂଜନର ଗୀତ :

ଓଟପରି ହୋଇ ଥା'ନ୍ତି କୁଜ ଧରି ପିଠିରେ
ଖାଉଥା'ନ୍ତି କଣ୍ଟାସିଝୁ ଧୂଳି ମରୁଭୂମିରେ ।
ରାଜା ମନ୍ତ୍ରୀ ସେନାପତି ମାରୁଥାନ୍ତେ କୋରଡ଼ା
ହସି ହସି ସହୁଥା'ନ୍ତି ( ତାଙ୍କ ) ନାଲି ଆଖି ଗୁରୁଡ଼ା ।

ସେ ଯେତେବେଳେ ଏମିତି ଦର୍ଶକ ସମ୍ମୁଖରେ ନାଚି ନାଚି ଗୀତ ଗାଉଥିଲା, ଠିକ୍ ସେତିକି ବେଳେ ଲୁମ୍ବାର ଦ୍ୱାର ପାଖରେ ପର ପର ତିନୋଟି ମୁହଁ ଦେଖାଗଲା । ସେ ମୁହଁ ତିନୋଟି ଯେପରି ପ୍ରାଗ୍-ଐତିହାସିକ ଜନ୍ତୁଙ୍କର ମୁହଁ । ମୁହଁରେ ମେଞ୍ଚା ମେଞ୍ଚା ଦାଢ଼ି । ମୁଣ୍ଡର ବାଳ ନୁଖୁରା, ଧୂଳିଆ ଏବଂ ଠିଆ ଠିଆ । ସେମାନେ ନିରଂଜନ ଆସିଲା ଭଳି ଘୂରି ଘୂରି ଲୁମ୍ବା ଭିତରୁ ବାହାରି ଆସିଲେ । ସେମାନଙ୍କ ପୋଷାକପତ୍ର ବି ସେଇପରି ଅଦ୍ଭୁତ ଧରଣର । ଏକ ପ୍ରକାର ଚିରା କନ୍ଥା ଭଳି ମଇଳା କୋଟଟା ଅଲ୍‌ଖଲ୍ଲା ବେକଠାରୁ ଆଣ୍ଠୁ ପର୍ଯ୍ୟନ୍ତ ପଡ଼ିଚି । ଅନ୍ୟପାଖ ଅଣ୍ଟା

ନାହିଁ କଣ୍ଠ ପଡ଼ୁନାହିଁ । ଅକ୍ଷି ଉଦଭ୍ରାନ୍ତ । ମୁହଁରେ ଉଦ୍‌ବେଗ । ସେମାନେ ବାହାରକୁ ଆସି ବୃନ୍ଦ ଉଡ଼ୁକୁ ଅନେଇ ସେପରି କାହାକୁ ଖୋଜିଲେ । ଖୋଜୁ ଖୋଜୁ ନଜର ପଡ଼ିଗଲା ନିରଂଜନ ଉପରେ । ସେ ସେମିତି ନାଚ ନାଚ ଗାଉଥିଲା । ତାକୁ ଦେଖି ସେମାନେ ତା ଆଡ଼କୁ ଆଗେଇ ଆସିଲେ ।

ସେମିତି ଶିକାରୀ, ଶିକାରକୁ ଆଖି ଆଗରେ ପାଇଲେ ଚୁପିଚୁପି ଆସି ଶିକାର ଉପରକୁ ଲମ୍ଫ ଦିଏ, ଠିକ୍ ସେମିତି ସେ ତିନିଜଣ ଆସି ହଠାତ୍ ନିରଂଜନକୁ ତିନିଆଡ଼ୁ ଘେରିଗଲେ ।

ବିଦ୍ୟାଧର ॥ ନିରଂଜନ !

ନିରଂଜନ ଏକ ଲୟରେ ଗାଇ ବୁଲୁଥିଲା । ହଠାତ୍ ଏ ଡାକରେ ଚମକି ପଡ଼ିଲା, ତା' ମୁହଁ ଭୟରେ ଶେତା ପଡ଼ିଗଲା, ସେ ଡାକ ଆସୁଥିବା ବିପରୀତ ଦିଗକୁ ଦୌଡ଼ିବାକୁ ଆରମ୍ଭ କଲା, କିନ୍ତୁ ସେତେବେଳକୁ ସେଠି ଠିଆ ହୋଇଥିଲା ଧୁରନ୍ଧର । ସେ'ବି ସେମିତି ଉରକ୍ତ ଗଳାରେ ଡାକିଲା ।

ଧୁରନ୍ଧର ॥ ନିରଂଜନ !

ହେଠ୍ ବାଧା ପାଇ ସେ ଅନ୍ୟ ଦିଗକୁ ଘୁରିପଡ଼ିଲା ବେଳକୁ ସେଠି ଠିଆ ହୋଇଥିଲା ତୃତୀୟ ବ୍ୟକ୍ତି, ସେ ମଧ୍ୟ ପାଟିକରି ଉଠିଲା ।

ବିଶାଳବାହୁ ॥ ନିରଂଜନ !

ନିରଂଜନ ଏଥର ହତାଶ ହୋଇ ପଡ଼ିଲା । ସେ ଧରା ପଡ଼ିଯାଇଛି ଏବଂ ପଳେଇବାର ସମସ୍ତ ରାସ୍ତା ବନ୍ଦ ହୋଇଯାଇଛି । କିଛିଏ ଆଗରୁ ଅର୍ଜିତ ସ୍ୱାଧୀନତା ଏବଂ ତା' ପାଇଁ ଉଲ୍ଲାସ ହଠାତ୍ ମଳିନ ପଡ଼ିଗଲା ।

ସେ ଦୁଃଖ ଗ୍ଲାନି ଏବଂ ହତାଶାରେ ମୁଣ୍ଡରେ ହାତ
ଦେଇ ବସିପଡ଼ିଲା ।

ନିରଂଜନ ॥ ମୁଁ ଧରା ପଡ଼ିଗଲି ।

ସେ ତିନିଜଣ ଯାକ ନିରଂଜନ ପାଖକୁ ନିକଟେଇ
ଆସିଲେ । ତା' ଦୁଇ ପାଖରେ ଏବଂ ପଛରେ
ତ୍ରିଭୁଜାକାର ହୋଇ ଠିଆ ହେଲେ । ନିରଂଜନ
ସେତେବେଳେ ମଝିରେ ତା' ଗ୍ରନ୍ଥକୁ ଜାକି ଥିଲା ।

ବିଦ୍ୟାଧର ॥ ଆମେ ସାରା ଗୁମ୍ଫାଟା ଖୋଜିଲୁଁ ।

ଧୁରନ୍ଧର ॥ ଗୁମ୍ଫା ବାହାରେ ବି ଖୋଜିଲୁଁ ।

ବିଶାଳବାହୁ ॥ ଶେଷରେ ଏଇଠି ...

ନିରଂଜନ ॥ ମୁଁ ଧରା ପଡ଼ିଗଲି । ମୋତେ ଛାଡ଼ିଦିଅନ୍ତୁ । ମୁଁ ଚାଲିଯାଏଁ ।

କିନ୍ତୁ, ସେ ପୁଣି ଏମାନଙ୍କ ଭିତରୁ ଖସି ଯିବାକୁ ଚେଷ୍ଟା
କଲା । କିନ୍ତୁ ସେ ଚେଷ୍ଟା ତା'ର ବିଫଳ ହେଲା ।
ତାକୁ ବିଶାଳବାହୁ ପଛରୁ ଖୁବ୍ ଜୋର୍‌ରେ ଭିଡ଼ି
ଧରିଲା ।

ବିଶାଳବାହୁ ॥ କୁଆଡ଼େ ?

ନିରଂଜନ ॥ ଯୁଆଡ଼େ ଦି' ଆଖି ନେଇ ଯିବ ।

ବିଦ୍ୟାଧର ॥ ତମେ ତମ ନିଜ ଇଚ୍ଛାରେ କୁଆଡ଼େ ଯାଇପାରିବ ନାହିଁ ।

ନିରଂଜନ ॥ କାହିଁକି ?

ବିଦ୍ୟାଧର ॥ ନୀଳବର୍ଣ୍ଣ ଶୃଗାଳ ପରି, ତମ ମୁହଁ ବଦଳି ଯାଇଛି । ତମେ
ଆଉ ଓଟ ମୁହାଁ ନୁହଁ ।

ଧୁରନ୍ଧର ॥ ଓଟ ମୁହାଁ ନୁହଁ ବୋଲି ରଜାଘର ତୁମକୁ ଧରି ନେବେ ।

ବିଶାଳବାହୁ ॥ ରଜା ଘର ଧରି ନେଲେ ତୁମକୁ ଦଣ୍ଡ ଦେବେ !

ବିଦ୍ୟାଧର ॥ ଦଣ୍ଡ ଦେବେ ଫାଶୀ !

ନିରଂଜନ ॥ ଫାଶୀ !

ଫାଶୀ ଶବ୍ଦ ଶୁଣି ନିରଂଜନ ଭୟରେ ଚମକି ପଡ଼ିଲା । ଯେପରି ତା'ର କୋଉଠି ମୁକ୍ତି ନାହିଁ । ଏଠି ଗୁମ୍ଫା, ସେଠି ଫାଶୀ । ତା'ର ଭୟକୁ ଦ୍ୱିଗୁଣିତ କରିବା ପାଇଁ ଏଇ ତିନିଜଣ ଯାକ ତା' ଚାରି ପାଖରେ ଘୂରିବାକୁ ଲଗିଲେ, ଏବଂ ମନ୍ତ୍ର ଉଚ୍ଚାରଣ କଲା ଭଳି ଘୂରି ଘୂରି କହିବାକୁ ଲଗିଲେ—

ବିଦ୍ୟାଧର
ଧୁରନ୍ଧର
ବିଶାଳବାହୁ } ଫାଶୀ ମାନେ ମୃତ୍ୟୁ ! ଫାଶୀ ମାନେ ମୃତ୍ୟୁ ! ଫାଶୀ ମାନେ ମୃତ୍ୟୁ !

ନିରଂଜନ କ୍ରମଶଃ ବ୍ୟତିବ୍ୟସ୍ତ ହୋଇ ଉଠୁଥିଲା । ଏମାନଙ୍କର ବାରମ୍ବାର ଉଚ୍ଚାରଣରେ ସେ ବିଚଳିତ ହୋଇ ପଡ଼ୁଥିଲା, ତା' ଆଖି ଆଗରୁ ଯେପରି ସମସ୍ତ ଆଶା ଆଶ୍ୱାସନାର ଆଲୋକ ଲିଭି ଯାଉଥିଲା । ତା' ଗଳା ଶୁଖି ଆସୁଥିଲା । ସେ ତେଣୁ ଖୁବ୍ ଜୋର୍‌ରେ ଚିତ୍କାର କରି ଉଠିଲା, ଗୋଟିଏ ଜାଗାରେ ବସି ପଡ଼ି ।

ନିଂରଜନ ॥ ନାଁ !

ଏମାନେ ସମସ୍ତେ ସ୍ତବ୍ଧ ହେଇଗଲେ ନିରଂଜନର ଏ ଅସ୍ୱାଭାବିକ ଚିତ୍କାରରେ । ତାକୁ ଘେରି ସେମାନେ ଠିଆ ହେଇଗଲେ ସ୍ତବ୍ଧ ଏବଂ ନିର୍ବାକ୍ ହୋଇ । ଏତେ ଜୋରରେ ଚିତ୍କାର କରି ଥିବାରୁ ନିରଂଜନ ଟିକିଏ ସ୍ତବ୍ଧ ହୋଇଗଲା । ଉତ୍ତେଜନାରେ ସେ ଧଇଁ ସଇଁ ହେଉଥାଏ । ହଠାତ୍ ଯେପରି ତା' ଆଖି ସାମନାରେ ଗୋଟାଏ ଉପାୟ ଦେଖାଗଲା । କ୍ଷୀଣ ତଥାପି ବଞ୍ଚିବାର ଉପାୟ, ଯଦିଓ ସେ ଉପାୟଟି ନିହାତି ଦୁର୍ବଳ ଏବଂ ହାସ୍ୟକର ଥିଲା ।

ନିରଂଜନ ॥ ମୁଁ—ମୁଁ ଗୋଟାଏ ଓଟ ମୁଖା ତିଆରି କରିବି । ମୁହଁରେ ଖଟେଇ ଦେବି ।

ବିଦ୍ୟାଧର ॥ ନୀଳବର୍ଣ୍ଣ ଶୃଗାଳ କି ଦେଖିଥିଲ, ତା' ରଙ୍ଗ ଛାଡ଼ିଗଲେ ସେ ତା' ଦଳରେ ମିଶିଯିବ ।

ବିଶାଳବାହୁ ॥ ମେଳ ସମ୍ମିଳନୀ ହେବ ।

ଧୁରନ୍ଧର ॥ ସେଇ ସମ୍ମିଳନୀ ହଲରେ ଥକେ ହୋ' ।

ନିରଂଜନ ॥ କୋଉଠି ଦେଖିଲ ଆଉ ! ସେ ତ ସେମାନଙ୍କର ନେତା ହବାକୁ ଚେଷ୍ଟିଥିଲା । ରଜା ହେଉଥା'ନ୍ତା । ଶାସନ କରିଥା'ନ୍ତା । ମୁଁ ତ ରଜା ହବାକୁ ଚାହେଁନା !

ନିରଂଜନର କଥା ଶୁଣି ସେମାନେ ତିନିଜଣ ଖୁବ୍ ନମ୍ର ସ୍ୱରରେ କ'ଣ କଥାବାର୍ତ୍ତା ହେବାକୁ ଲାଗିଲେ । ନିରଂଜନକୁ ଦେଖେଇ, ଅର୍ଥପୂର୍ଣ୍ଣ ଭାବରେ କିଛି ମନ୍ତ୍ରଣା କଲେ, ନିଜ ନିଜ ଭିତରେ, ତା'ପରେ ନିରଂଜନ ଆଡ଼କୁ ଘୂରି ପଡ଼ିଲେ । ତା' ଆଡ଼କୁ ସେମାନଙ୍କରେ ଏକ ସମସ୍ୱରରେ ଅଙ୍ଗୁଳି ନିର୍ଦ୍ଦେଶ କରି ହଠାତ୍ କହିବାକୁ ଲାଗିଲେ ।

ବିଦ୍ୟାଧର<br>ଧୁରନ୍ଧର<br>ବିଶାଳବାହୁ } ଆମେ ତୁମକୁ କ୍ଷମା କରିଛୁ ।

ନିରଂଜନ ॥ ପ୍ରଜାମାନେ ଓଟ ମୁହାଁ ହେଲେ କ'ଣ ହବ ସବୁ ବୁଝି ପାରନ୍ତି । ରଜାମାନେ ତ କେବଳ ସବୁ ବୁଝିପାରନ୍ତି ।

ବିଦ୍ୟାଧର ॥ ଆମେ ଚାହୁଁ, ସେମାନଙ୍କ ମୁହଁ ବି ବଦଳି ଯାଉ ।

ଧୁରନ୍ଧର ॥ ଠିକ୍ ତୁମର ଯେମିତି ବଦଳି ଗଲା ।

ବିଶାଳବାହୁ ॥ ତମେ ବିଦ୍ୟାନରେ ପଣ୍ଡିତ ହେଲ ।

ନିରଂଜନ ॥ ମୁଁ ସବୁ ଭୁଲିଯାଇଛି । ଏମିତିକି ବର୍ଣ୍ଣ ପରିଚୟ ବି ମୋ'ର ମନେ ନାହିଁ ।

ବିଶାଳବାହୁ ॥ ତମେ ଗୃଳାଗଲେ ଆମକୁ ମୁକ୍ତି ଦେବ କିଏ ?

ଧୂରନ୍ଧର ॥ ଆମେ ରାଜାମାନଙ୍କ ଭୟରେ ଗୁମ୍ଫାରୁ ଗୁମ୍ଫାକୁ ପଳେଇ ପଳେଇ ବୁଲୁଚୁଁ ।

ବିଦ୍ୟାଧର ॥ ତମେ ଆମର ଭରସା । ଯୋଉଦିନ ତମ ଭଳି ସମସ୍ତଙ୍କ ମୁଣ୍ଡ ବଦଳି ଯିବ, ସେଇଦିନ ଆମକୁ ମୁକ୍ତି ମିଳିବ ।

ନିରଂଜନ ॥ ଆପଣମାନେ ଜ୍ଞାନୀ, ବୁଦ୍ଧିଜୀବୀ, ଆପଣମାନେ ବିଜ୍ଞ ।

ବିଶାଳବାହୁ ॥ ସେଇଥିପାଇଁ ତ ରାଜାଙ୍କର ରୋଷ ଆମ ଉପରେ ।

ନିରଂଜନ ॥ ରାଜା ତ ଚିତ୍ରକର । ସେ ଭାରି ସୁନ୍ଦର ଓଟ ମୁଣ୍ଡ ଆଙ୍କି ପାରନ୍ତି, ସେଇ ତ ଗୀତ ଲେଖିଚନ୍ତି ଓଟମାନଙ୍କର ଗାଇବା ପାଇଁ—

ନିରଂଜନ ପୁଣି ଗୀତ ଗାଇବାକୁ ଆରମ୍ଭ କଲା, ସେଇ ପରି ନାଚି ନାଚି, ଘୂରି ଘୂରି, ଓଟର ଅଭିନୟ କରି, ସେ ଏମାନଙ୍କୁ ଗୀତ ଶୁଣେଇବାରେ ଲାଗିଲା ।

ନିରଂଜନର ଗୀତ :

ଓଟ ଭଳି ଜୀବ ନାହିଁରେ ଭାଇ
ଶାନ୍ତି ତୁ ପାଇବୁ ଯା' ଓଟ ହୋଇ
ପିଠିରେ କୁଜଟା କି ମନୋହର
ତୋ ନିରୀହ ଆଖି ଭାରି ସୁନ୍ଦର
କଣ୍ଟା ଝଣ୍ଟା ପିଞ୍ଛୁ ଯା' ଖାଇଯା'
ତାତିଲା ବାଲିରେ ଯା' ଶୋଇଯା'
ଓଟ ଭଳି ଜୀବ ନାହିଁରେ ଭାଇ
କହେ ରାଜା ସୁର ଯା' ଓଟ ହୋଇ ।

ବିଦ୍ୟାଧର ॥ ନାଁ, ଏ ଗୀତ ରାଜାଙ୍କର ରଚନା ନୁହେଁ ।

ନିରଂଜନ ॥ ଗୀତାରେ ଅଛି ପରା, କହେ ରାଜା ସୁର ଯା' ଓଟ ହୋଇ ।'

ଧୂରନ୍ଧର ॥ ରାଜାଙ୍କ ନାଁରେ ଅନ୍ୟ କେହି ଲେଖିଛି ।

ବିଶାଳବାହୁ ॥ ରାଜାଙ୍କ ଆଦେଶରେ ଅନ୍ୟ କେହି ଓଟ ମୁହାଁ ।

ନିରଂଜନ ॥ ତେଣୁ ମୁଁ କହୁଚି କ'ଣ କି, ମୁଁ ବି ଓଟ ହୋଇଯିବି । ଏ ସବୁ ଜଂଜାଳ ମୋତେ ପୋଷାଏନି ।

ବିଶାଳବାହୁ ॥ ଦିନେ କାଲୁ ସମସ୍ତେ ଓଟ ମୁହଁରୁ ବଦଳି ଯିବେ ମଣିଷ ମୁହଁକୁ ।

ନିରଂଜନ ॥ ସର୍ବନାଶ, ସେତେବେଳେ ରାଜା ଆତ୍ମହତ୍ୟା କରିବେ ।

ଧୁରନ୍ଧର ॥ ନାଁ, ରାଜାମାନେ ଆତ୍ମହତ୍ୟା କରନ୍ତିନି । ସେମାନେ ମରନ୍ତିନି ।

ବିଦ୍ୟାଧର ॥ ଜଣେ ମଲେ ଆଉ ଜଣେ ଆସେ ।

ବିଶାଳବାହୁ ॥ କିମ୍ବା ଜଣେ ଅନ୍ୟଜଣକୁ ମାରିଦିଏ । ଜଣକ ପରେ ଜଣେ ।

ବିଦ୍ୟାଧର ॥ ଓଟ ମୁହଁ ସେମିତି ଓଟ ହୋଇ ରହିଯାଏ ।

ନିରଂଜନ ଏମାନଙ୍କ ଠାରୁ ଟିକିଏ ଦୂରକୁ ଚାଲିଗଲେ କହୁଁ କହୁଁ । ଏତେବେଳକୁ ତା' ମନର ସେଇ ଭୟ, ଆଶଙ୍କା ଏବଂ ସନ୍ଦିଗ୍‌ଧତା କଟିଯାଇଥିଲା । ସେ ଏମାନଙ୍କ ସାଙ୍ଗରେ ବେଶ୍ ସାବଲୀଳ ସ୍ୱରରେ କଥା କହୁଥିଲା ।

ନିରଂଜନ ॥ ମୋତେ ତା' ହେଲେ ଛୁଟି ମିଳିଯିବ । ମୁଁ କାହାର କଷ୍ଟ କରିପାରିବି ନାହିଁ ।

ଏମାନେ ପୁଣି ଅନେଇଲେ ନିରଂଜନକୁ । ଦେଖିଲେ ଏମାନଙ୍କ ଠାରୁ ଟିକିଏ ଦୂରରେ ନିରଂଜନ ଠିଆ ହୋଇଚି । ସେମାନେ ନିରଂଜନକୁ ହାତ ଛଡ଼ା କରିବାକୁ ଚାହୁଁ ନଥିଲେ । ଏପରିକି ସେମାନଙ୍କର ହାତ ପାହାନ୍ତାର ଦୂରକୁ ଯିବା ମଧ୍ୟ ଚାହୁଁ ନଥିଲେ । ତେଣୁ ସଚେତନ ହୋଇ ସେମାନେ ପୁଣି ନିରଂଜନ ଆଡ଼କୁ ଆଗେଇଗଲେ । ତା ମଧ୍ୟରେ ତିନିହେଁ ଏକ ସମୟରେ କହିଉଠିଲେ—

ବିଦ୍ୟାଧର<br>ଧୁରନ୍ଧର<br>ବିଶାଳବାହୁ } ତମେ ଚାଲିଗଲେ ଆମେ ?

ସେମାନଙ୍କର ଏ କଥାରେ ଦାବୀ ନଥିଲା କିମ୍ବା ପୂର୍ବର ସେଇ ଆଦେଶର ସ୍ୱର ନଥିଲା । ବରଂ ଏକ ଅନୁନୟ ଏବଂ ପ୍ରାର୍ଥନାର ଆବେଦନ ଥିଲା ସେ କଥାରେ । କିନ୍ତୁ ନିରଂଜନ କ୍ରମଶଃ କୌତୁକମୟ ହୋଇ ଉଠୁଥିଲା । କ୍ରମଶଃ ତା'ର କଥା ଗୁଡ଼ାକ ଶ୍ଳେଷମୟ ଏବଂ ତୀକ୍ଷ୍ଣ ହୋଇ ଉଠୁଥିଲା ।

ନିରଂଜନ ॥ ଜଣକ ପରେ ଜଣେ, ମୋ' ପଛରେ, ଏ ଗୁମ୍ଫାରୁ ଆମେ ସମସ୍ତେ ବାହାରି ଯିବା ।

ବିଦ୍ୟାଧର ॥ ଆମ ମୁଣ୍ଡର ଦାମ ଦଶ ହଜାର ସ୍ୱର୍ଣ୍ଣ ମୁଦ୍ରା

ବିଶାଳବାହୁ ॥ ଜୀବିତ କିମ୍ବା ମୃତ ।

ଧୁରନ୍ଧର ॥ ଆମର ମୁକ୍ତି ନାହିଁ, ମୁକ୍ତି ନଥିଲା କେବେ ।

ନିରଂଜନ ଏଥର ଟିକିଏ ବିରକ୍ତ ହୋଇ ଉଠିଲା, ତା'ର ମନେ ହେଲା ଯେପରି ଏ ଲୋକଗୁଡ଼ାକ ଗୁଡ଼ାଏ ଅଯଥା ଆବ୍‌ଦାର୍ କରୁଛନ୍ତି । ସେଇପରି ବିରକ୍ତିପୂର୍ଣ୍ଣ କଣ୍ଠରେ ସେ କହିଲା,

ନିରଂଜନ ॥ ମୋତେ ଆଉ ଅଯଥାଟାରେ ତା' ଭିତରକୁ କାହିଁକି ଟାଣୁ-ଚନ୍ତି କହିଲେ ? ଦେଖିବେ, ସେମାନେ ମୋ' ମୁଣ୍ଡର ବି ଦାମ୍ କଷି ଦେବେ । ଦଶହଜାର ସ୍ୱର୍ଣ୍ଣମୁଦ୍ରା, ଜୀବିତ କିମ୍ବା ମୃତ ।

ଏଥର ସେ ଦର୍ଶକ ମାନଙ୍କ ଆଡକୁ ଘୂରିଲା । ଦର୍ଶକ-ମାନଙ୍କୁ ଘଟଣାଟା ଜଣେଇଦେବା ଢଙ୍ଗରେ ସେ କହିବାକୁ ଆରମ୍ଭ କଲା ।

ନିରଂଜନ ॥ ଏ ରାଜ୍ୟରେ ଓଟ ମୁଣ୍ଡଟା ଭରି ଶସ୍ତା ଆଜ୍ଞା, ତେଣୁ କାହାରି ନଜର ପଡ଼େନି । ମୁଁ କି ଦୁର୍ବୁଦ୍ଧି କଲି, ଏମାନଙ୍କ କଥାରେ ପଡ଼ି କାହିଁକି ସେ ମଣିଷ ମୁଣ୍ଡ ଧରିଲି, କାହିଁକି ସେ ଏମାନେ ମୋତେ କ୍ଷମା କରିଦେଲେ···

ଧୁରନ୍ଧର ॥ ମୁଁ ତୁମକୁ ଅତୀତ କ'ଣ କହୁଚି, ଯାହାର ନାଁ ଇତିହାସ, ମୁଁ ଧୁରନ୍ଧର ।

ବିଦ୍ୟାଧର ॥ ମୁଁ ତୁମକୁ ଘୁଷୁରି ଘୁଷୁରି ଚାଲିବାଠାରୁ ସିଧା ହୋଇ ଠିଆ ହବାର କୌଶଳ ଶିଖେଇଚି, ମୁଁ ବିଦ୍ୟାଧର ।

ବିଶାଳବାହୁ ॥ ମୁଁ ଭବିଷ୍ୟତ କ'ଣ ହବା ଉଚିତ, ତା'ର ଛବି ତୁମ ଆଗରେ ଆଙ୍କି ଦେଇଚି । ମୁଁ ବିଶାଳବାହୁ ।

ନିରଂଜନ ॥ ଆଜି ମୁଁ ଓଟ ମୁଣ୍ଡିଆରୁ ହୋଇଯାଇଚି ମଣିଷମୁଣ୍ଡିଆ, ମୁଁ ନିରଂଜନ ।

ବିଦ୍ୟାଧର ॥ ତମ ଉପରେ ଆମର ଅନେକ ଆଶା ।

ଧୁରନ୍ଧର ॥ ଆମେ ହିସାବ ନଥିବା ସମୟଠାରୁ ଆଜ ଯାଏ ଗୋଟାଏ ଅନ୍ଧାରିଆ ଗୁମ୍ଫାରୁ ଆଉ ଗୋଟାଏ ଗୁମ୍ଫାକୁ ଚାଲେଇ ପଳେଇ ବୁଲୁଚୁଁ...

ବିଶାଳବାହୁ ॥ ନିଜକୁ ଭୟ ଆଉ ଈର୍ଷ୍ୟାରୁ ବଞ୍ଚେଇବା ପାଇଁ ।

ନିରଂଜନ ॥ କାହିଁକି ? [ ବିଶାଳବାହୁକୁ ପଚାରିଲା ]

ବିଶାଳବାହୁ ॥ ଜ୍ଞାନୀ ହବାର ପୁରସ୍କାର ।

ନିରଂଜନ ॥ କାହିଁକି ? [ ବିଦ୍ୟାଧରକୁ ପଚାରିଲା ]

ବିଦ୍ୟାଧର ॥ ବିଜ୍ଞ ହେବାର ଗଞ୍ଜଣା

ନିରଂଜନ ॥ କାହିଁକି ? [ ଧୁରନ୍ଧରକୁ ପଚାରିଲା ]

ଧୁରନ୍ଧର ॥ ବହୁତ କିଛି ଜାଣିଥିବାର ଶାସ୍ତି ।

ନିରଂଜନ ॥ ଏଇ ରାଜା କ'ଣ ଚିରଦିନ ଥିବେ ?

ବିଶାଳବାହୁ ॥ ସିଂହାସନ କିନ୍ତୁ ଚିରଦିନ ଥିବ । ବତିଶ ସିଂହାସନ ପରି ଅହଙ୍କାର ଆଉ ଅତ୍ୟାଚାରର ସିଂହାସନ । ତା' ଉପରକୁ ଯିଏ ଚଢ଼ିଲା, ପର ମୁହୂର୍ତ୍ତରେ ଆଦେଶ...

ବିଦ୍ୟାଧର ॥ ବିଦ୍ୟାଧର, ଧୁରନ୍ଧର ଆଉ ବିଶାଳବାହୁର ମସ୍ତକର ମୂଲ୍ୟ ପ୍ରତ୍ୟେକ ଦଶହଜାର ସ୍ୱର୍ଣ୍ଣମୁଦ୍ରା, ଜୀବିତ କିମ୍ବା ମୃତ ।

ନିରଂଜନ ॥ କାହିଁକି ଏମିତି ହୁଏ, କାହିଁକି ?

ଧୂରନ୍ଧର ॥ ଦର୍ପଣରେ ନିଜ ଚେହେରା ଦେଖିପାରିବାର ଭୟ ।

ଚନିଜଣଙ୍କର ମୁଣ୍ଡ ଛାତି ଉପରକୁ ଝୁଲି ପଡ଼ିଚି । ହତାଶା ବ୍ୟର୍ଥତାରେ ମ୍ରିୟମାଣ ସେମାନଙ୍କର ଠିଆହେବାର ଭଙ୍ଗୀ, ଯେପରି ସର୍ବଶେଷ ଆଶା ଟିକିକ ମଧ୍ୟ ସେମାନଙ୍କ ହାତପାହାନ୍ତାରୁ ଅପସାରିତ । ନିରଂଜନ ମଧ୍ୟ ଗମ୍ଭୀର । ଟିକିଏ ପୂର୍ବର ଚପଳତା ଆଉ ନାହିଁ । ସେ'ବି ଯେପରି ଏମାନଙ୍କ ଦଳରେ ଅନ୍ତର୍ଭୁକ୍ତ ଅସହାୟ ଏକ ମୂର୍ତ୍ତିକ । ସେ ଏମାନଙ୍କୁ ପର୍ଯ୍ୟାୟକ୍ରମେ ଅନେଇ ଗଲା । ତା' ପରେ ସେଇ ହତାଶ ଜର୍ଜରିତ କଣ୍ଠରେ କହିଲା,

ନିରଂଜନ ॥ ମୁଁ—ମୁଁ କ'ଣ କରିବି ?

ବିଦ୍ୟାଧର ଏଥର ମୁଣ୍ଡ ଉଠେଇଲା । ତା ସାଙ୍ଗେ ସାଙ୍ଗେ ଅନ୍ୟମାନେ ମଧ୍ୟ ମୁଣ୍ଡ ଉଠେଇ ନିରଂଜନକୁ ଅନେଇଲେ । ବିଦ୍ୟାଧର ଯେମିତି ଆଶାର ଆଲୋକ ଦେଖି ପାରୁଥିଲେ । ସେ ଆଗେଇ ଗଲେ ନିରଂଜନ ପାଖକୁ । ବହୁ ଦିନର ପୁରୁଣା, ଅତି ଆପଣାର ବନ୍ଧୁ ଭଳି ତା' କାନ୍ଧରେ ହାତ ରଖିଲେ । ଏବଂ ତାକୁ ବୁଝେଇବା ଭଳି କଣ୍ଠରେ କହିଲେ,

ବିଦ୍ୟାଧର ॥ ତମ ଭଳି ଅନେକ ଲୋକଙ୍କୁ ଆମେ ଧରି ଆଣିଚୁଁ, ଥରକୁ ଥର, ଜଣ ଜଣ କରି । ତମ ଭଳି ସେମାନେ ମନ୍ତ୍ରୀଷ ହେଇଚନ୍ତି । ରାଜଧାନୀକୁ ଯାଇଚନ୍ତି । କିନ୍ତୁ ଆଉ ଫେରି ନାହାନ୍ତି ।

ଧୂରନ୍ଧର ॥ କିଚ୍ଛି ଦିନ ପରେ ପୁଣି ସେଇ ଘୋଷଣା ଦୋହରେଇ ଦିଆ ଯାଇଚି ।

ବିଶାଳବାହୁ ॥ ମସ୍ତକର ମୂଲ୍ୟ ଦଶହଜାର ସ୍ୱର୍ଣ୍ଣ ମୁଦ୍ରା ।

ବିଦ୍ୟାଧର ॥ ଆମକୁ ପୁଣି ଗୁମ୍ଫା ବଦଳେଇବାକୁ ପଡ଼ିଚି ।

ନିରଂଜନ ॥ ବାଃ, ବଢ଼ିଆ କଥା । ବୁଢ଼ିଆଣୀ ଫାନ୍ଦ ବସେଇଲା ଭଳିଆ ଫାନ୍ଦ ବସେଇ ଓଟମୁହାଁ ଧରିବେ । ସେ ଫେର୍ ମଣିଷ ହୋଇ ରାଜଧାନୀକୁ ଚାଲିଯିବ ।

ଧୁରନ୍ଧର ॥ ଅଥଚ ତା' ପାଇଁ ରାଜଧାନୀରେ ମରଣର ଫନ୍ଦା ବସିଥିବ ।

ବିଶାଳବାହୁ ॥ ସେମାନଙ୍କର ଈର୍ଷା ଆଜି ଚକ୍ରାନ୍ତର ଶୀକାର ହୋଇ ସେଇ ଏକା ଲୋକଟି ଚିରଦିନ ପାଇଁ ଆଖି ବୁଜିଦବ ।

ବିଦ୍ୟାଧର ନିରଂଜନର ହାତ ଧରି ଆଗକୁ ଆଗେଇ ଆଣିଲା । ବିଶାଳବାହୁ ଏବଂ ଧୁରନ୍ଧର ତାଙ୍କୁ ଅନୁସରଣ କରୁଥିଲେ ।

ବିଦ୍ୟାଧର ॥ ସେଥିପାଇଁ ଆମେ ଅନେକ ଚକ୍ରାର କରିଚୁଁ । ଆମର ଚକ୍ରାର ନିର୍ଜନ ଗୁମ୍ଫା ଭିତରେ ଅନେକ ପ୍ରତିଧ୍ୱନି ତୋଳିଚି । କିନ୍ତୁ ତା' ପରେ ସବୁ ସ୍ଥିର । ଯାହା ଯେମିତି ଚାଲୁଥିଲା, ସେମିତି । ଅବାରିତ । ଅପ୍ରତିହତ ।

ନିରଂଜନ ॥ ଯଦି ସବୁ ଗତି ବଦଳି ଯାଏ, ତା'ହେଲେ ମୋ' ମୁଣ୍ଡର ଦାମ ହବ ଦଶହଜାର ସ୍ୱର୍ଣ୍ଣ ମୁଦ୍ରା ।

ବିଦ୍ୟାଧର ॥ ସମସ୍ତେ ଓଟ ମୁହାଁରୁ ମଣିଷ ମୁଣ୍ଡ ହେବେ । ସମସ୍ତେ କଥା କହିବେ । କାନ୍ଦି ପାରିବେ । ହସି ପାରିବେ । ରାଗି ପାରିବେ ।

ବିଦ୍ୟାଧର କହୁନଥିଲା, ଯେପରି ପ୍ରାର୍ଥନା କରୁଥିଲା । ତା' କଥାରେ ଆକୁଳତା ଥିଲା, ମିନତି ଥିଲା । ଧୁରନ୍ଧର ଏବଂ ବିଶାଳବାହୁ ମଧ୍ୟ ଠିକ୍ ବିଦ୍ୟାଧର ପରି ନିରଂଜନକୁ ଅନୁରୋଧ କରିବାକୁ ଲାଗିଲେ । ସମଗ୍ର ଓଟ ମୁହାଁ ମାନଙ୍କର ଦୁଃଖ, ଯନ୍ତ୍ରଣା ଯେପରି ଏଇ ତିନିଜଣ ବିଜ୍ଞ ଲୋକଙ୍କୁ ଜର୍ଜରିତ କରୁଥିଲା ।

ଧୁରନ୍ଧର ॥ ତମ ଭଳି ସମସ୍ତେ ଅଙ୍କ ଜାଣିବେ । ଭବିଷ୍ୟତର ସ୍ୱପ୍ନ ଦେଖିବେ ।

ଚଣ୍ଡାଳବାହୁ ॥ ସିଧା ହେଇ ଠିଆ ହେବ । ମୁକ୍ତିର ଆଲୋକ ଦେଖିବେ । ସେମାନଙ୍କର ବଞ୍ଚିବା ସାର୍ଥକ ହବ ।

ନିରଂଜନ ॥ ଆଜି ସେମାନଙ୍କର ମୁଣ୍ଡର ଦାମ ହବ ଦଶହଜାର ସ୍ୱର୍ଣ୍ଣ ମୁଦ୍ରା ।

ଏଥର ତିନିହେଁ ତା' ପାଖରେ ତାକୁ ଘେରି ଆଣ୍ଠେଇ ପଡ଼ିଲେ । ସମ୍ମିଳିତ ଭାବରେ, ଏକ ସ୍ୱରରେ, ପ୍ରାର୍ଥନା କରିବା ଭଳି କିମ୍ବା ମନ୍ତ୍ର ଉଚ୍ଚାରଣ କଲା ଭଳି କଣ୍ଠରେ କହିଲେ,

ଚଣ୍ଡାଳବାହୁ
ଧୂର୍ଜଟିର } ଆମେ ଗୁମ୍ଫାର ଅନ୍ଧାର ଭିତରୁ ମୁକ୍ତ ହବୁଁ ।
ବିଦ୍ୟାଧର

ହୋ ହୋ ହୋଇ ହସିଉଠିଲା ନିରଂଜନ । ଏମାନଙ୍କର ଆକୁଳ ପ୍ରାର୍ଥନା ଯେପରି ତା'ର ଏଇ ବିଦ୍ରୂପ ଶାଣିତ ହସରେ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ଗଲା । ତା'ର ପରିହାସ ଯେପରି ନିଷ୍ଠୁର ସେଇପରି ଉପହାସ୍ପଦ ।

ନିରଂଜନ ॥ ହାଃ, ହାଃ, ହାଃ, ନିର୍ଜନ ଗୁମ୍ଫାରେ ନିର୍ବାସିତର ବିଳାପ !

କିନ୍ତୁ ତଥାପି ସେମାନେ ନିରାଶ ହେଲେନି । ତା'ର ଏ ହସରେ ସେମାନେ ଉତେଜିତ କିମ୍ବା ହତାଶ ହେଲେନି । ବରଂ ସେମାନଙ୍କର ଆକୁଳତା ଅନ୍ତର୍ଦ୍ଧ ତିବ୍ର, ଆନ୍ତରିକ ଅନୁନୟ ପ୍ରକାଶିତ ହୋଇ ଉଠିଲା ।

ବିଦ୍ୟାଧର ॥ ଆଜ ପ୍ରଥମଥର ପାଇଁ ତମେ ଗୁମ୍ଫାର ବାହାରକୁ ଯିବ ।

ଚଣ୍ଡାଳବାହୁ ॥ ତମେ ଯିବା ପରଠାରୁ ଆମେ ପ୍ରହର ଗଣିବୁଁ ।

ଧୂର୍ଜଟିର ॥ ଅପେକ୍ଷା କରିବୁଁ ସେଇ ଦିନକୁ ଯୋଉଦିନ ତମେ ଆସିବ, ହାତରେ ତମର ଥିବ ମୁକ୍ତିର ସନନ୍ଦ ।

ମୁକ୍ତିର ଆଶାରେ ନିରଂଜନ ଉଲ୍ଲସିତ ହୋଇ ଉଠିଲା । ଏମାନଙ୍କ ବୁକ ଭିତରୁ ବାହାରି ଆସିଲା ଆନନ୍ଦ ଏବଂ

ଉତ୍କଣ୍ଠାରେ । ସେ ସେପରି ଆଉ ମୁହଁଟିକୁ ବି ମୋଟେ ନଷ୍ଟ କରିବାକୁ ଚାହୁଁ ନଥିଲା ।

ନିରଂଜନ ॥ ସତେ ? ତା'ହେଲେ ଯାଉଚି, କମାରଶାଳରୁ କି ବଢ଼େଇଘରୁ ଓଟ ମୁଖାଟିଏ ତିଆରି କରି ପିନ୍ଧି ପକେଇବି । ଯାଉଚି, ନମସ୍କାର ।

ସେ ଚାଲି ଯାଉଥିଲା । କିନ୍ତୁ ହଠାତ୍ ବିଶାଳବାହୁ, ଧୁରନ୍ଧର ଏବଂ ବିଦ୍ୟାଧର ତା' ପଥରୋଧ କରି ଠିଆହେଲେ ।

ବିଶାଳବାହୁ }<br>
ଧୁରନ୍ଧର } ରୁହ !<br>
ବିଦ୍ୟାଧର }

ନିରଂଜନ ॥ ଆଉ ରହିବି କାହିଁକି ? ବେଳା ବେଳ ଗଳିଗଲେ ମୋ' ଠିକଣା ଜାଗାରେ ପହଞ୍ଚି ଯିବି ।

ବିଦ୍ୟାଧର ॥ ତମ ଠିକଣା ତମେ ଜାଣ ?

ନିରଂଜନ ॥ ଯଦି ଭୁଲିଯାଇଥାଏଁ ତେବେ ନୂଆ ଠିକଣାଟିଏ ତିଆରି କରିବି ।

ବିଦ୍ୟାଧର ॥ ତା' ହେଲେ ଲୋକମାନଙ୍କର କ'ଣ ହେବ ?

ବିଶାଳବାହୁ ॥ କ'ଣ ହେବ ଓଟ ମୁହାଁମାନଙ୍କର ଭବିଷ୍ୟତ ?

ଧୁରନ୍ଧର ॥ ସେମାନେ କେମିତି ବଦଳିବେ ?

ନିରଂଜନ ॥ ମୋତେ ଆଗେ ବୁଝେଇ ଦେଲେ, ମୁହଁ ବଦଳିଲେ ରାଜ୍ୟ ବଦଳିବ, ନାଁ ରାଜ୍ୟ ବଦଳିଲେ ମୁହଁ ବଦଳିବ ?

ଧୁରନ୍ଧର ॥ ମଞ୍ଜିରୁ ଗଛ ନା ଗଛରୁ ମଞ୍ଜି ?

ନିରଂଜନ ॥ ବାଃ, ବଢ଼ିଆ ରାଜନୈତିକ ପ୍ରଶ୍ନଟିଏ ପଚାରିଲେ । କିନ୍ତୁ ସେ ପ୍ରଶ୍ନର ଉତ୍ତର ମୁଁ ଜାଣେନି । ହୁଏତ ସମୟ ତା'ର ଉତ୍ତର ଦେବ । ତେଣୁ ମୁଁ କହୁଚି କ'ଣ କି, ମୋତେ ଆଉ ଅଟକେଇ ରଖନ୍ତୁନି, ମୁଁ ମୋ' ବାଟରେ ଚାଲିଯାଏଁ ।

ପୁଣି ସେ ଯିବାକୁ ଆରମ୍ଭ କଲା । ଏମାନଙ୍କୁ ପଛରେ ପକେଇ, ଏମାନଙ୍କୁ ଅସ୍ୱୀକାର କରି । କିନ୍ତୁ ଧୁରନ୍ଧର ପୁଣି ତାକୁ ଧରିନେଲା । ତାକୁ ନିଜ ଆଡ଼କୁ ଟାଣି ନେଲା ।

ଧୁରନ୍ଧର ॥ ରୁଦ୍ର, ତମେ ଏକା ଯାଇ ପାରିବନି ।

ବିଶାଳବାହୁ ॥ ତମ ସାଙ୍ଗରେ ଆମେ ଦେବୀଙ୍କୁ ପଠେଇବୁଁ ।

ନିରଂଜନ ॥ ଦେବୀ !

ବିଶାଳବାହୁ ॥ ହଁ । ଯାହା ସାଙ୍ଗରେ ତମେ ଗୁମ୍ଫା ଭିତରେ ଏତେଦିନ କଟେଇ ଆସିଲ । ଯାହାର ହାତବାଜ ତମେ ଓଟରୁ ମଣିଷ ହେଇଗଲ ।

ନିରଂଜନ ॥ ଆଉ ସେଠି ଯାଇ ପହଞ୍ଚିଲେ··· ···

ବିଦ୍ୟାଧର ॥ ହୁଏତ ହାତ ବାଜି ସମସ୍ତେ ବଦଳି ଯିବେ ।

ନିରଂଜନ ॥ ସମସ୍ତେ ବଦଳି ସାରିଲାବେଳକୁ ତା' ହାତ ଆଉ ହାତହେଇ ଥିବ ତ ?

ଧୁରନ୍ଧର ॥ ବହୁତ ଲୋକର ମଙ୍ଗଳ ପାଇଁ କାହାକୁ ନା କାହାକୁ ବଳି ପଡ଼ିବାକୁ ହବ ।

ନିରଂଜନ ॥ ତା' ହେଲେ ବଳିଟି କିଏ ହବ ? ମୁଁ, ନା ଦେବୀ ?

ବିଦ୍ୟାଧର ॥ ମୁଁ ଭାବୁଚି, ସେ ଯଦି କଥା କହି ପାରୁଥା'ନ୍ତା !

ନିରଂଜନ ॥ ତା' ହେଲେ କ'ଣ ହୁଅନ୍ତା ?

ବିଶାଳବାହୁ ॥ ହାତର ସ୍ପର୍ଶରେ ନୁହେଁ, ତା' କଣ୍ଠର ସ୍ୱରରେ ସମସ୍ତେ ସମ୍ପୂର୍ଣ୍ଣ ଭାବରେ ବଦଳି ଯା'ନ୍ତେ । ଖାଲି ଟିକିଏ କଥା, ତା' ମୁହଁର ଭାଷା, ତା' ଜାଣିଥିବା ଗୀତର ଅର୍ଥ ।

ନିରଂଜନ ॥ ଅନେକ ଥର ପଚାରିଚି । ତା' ବିଷୟରେ ମୋତେ ଆପଣ କିଛି କହି ନାହାନ୍ତି ।

ବିଦ୍ୟାଧର ॥ କହିବା ଦରକାର ପଡ଼ି ନଥିଲା, ଆମେ ଭାବିଥିଲୁଁ ଜଣକ ପରେ ଜଣକୁ ଗୁମ୍ଫା ଭିତରକୁ ଡାକିଆଣି ତମ ଭଳି ମଣିଷ ମୁହଁକୁ ବଦଳେଇ ଦବୁଁ ।

ବିଶାଳବାହୁ ॥ କିନ୍ତୁ ଯୋଦ୍ଧମାନେ ବଦଳିଲେ, ସେମାନେ ରାଜଧାନୀକୁ ଯାଇ ଆଉ ଫେରିଲେନି ।

ଧୁରନ୍ଧର ॥ ସେଇଥିପାଇଁ ଠିକ୍ କଲୁଁ ଏଥର ସେ ତମ ସାଙ୍ଗରେ ଯିବ ।

ନିରଂଜନ ॥ ନିଜକୁ ତ ବନ୍ଦି ନେଇ ଯିବାର ଶକ୍ତି ନାହିଁ, ସେଥିରେ ପୁଣି ସେଇ କଥା କହି ପାରୁ ନଥିବା ଝିଅଟା ।

ବିଦ୍ୟାଧର ॥ କିନ୍ତୁ ସେ କଥା କହିବ ।

ବିଶାଳବାହୁ ॥ ତା' ଟାଣୁଥିବା ଗାରର ଅର୍ଥ, ସେମାନଙ୍କର ମୁକ୍ତିର ଇତିହାସ, ସବୁ ଜଣା ପଡ଼ିବ ।

ଧୁରନ୍ଧର ॥ ତେଣୁ ସେ ତମ ସାଙ୍ଗରେ ଯିବ ।

ନିରଂଜନ ॥ ଯାହା ବିଷୟରେ ମୁଁ କିଛି ଜାଣିନି ତାକୁ ନେଇ ମୁଁ କୁଆଡ଼େ ଯିବି ?

ବିଦ୍ୟାଧର ॥ [ ଧୁରନ୍ଧରକୁ କହିଲା ] ଯାଅ, ତାକୁ ନେଇ ଆସ ।

ଧୁରନ୍ଧର ସମସ୍ତଙ୍କୁ ଅନେଇଲା । ତା' ପରେ ଗୁମ୍ଫା ଅଡ଼କୁ ଚାଲିବାକୁ ଆରମ୍ଭ କଲା । ନିରଂଜନ ଧୁରନ୍ଧରକୁ ଅନୁସରଣ କଲା ଗୁମ୍ଫା ପର୍ଯ୍ୟନ୍ତ ଏବଂ ଧୁରନ୍ଧର ଗୁମ୍ଫା ଭିତରେ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ଅପେକ୍ଷା କଲା । ତା'ପରେ ଫେରି ଆସିଲା ବିଶାଳବାହୁ ଏବଂ ବିଦ୍ୟାଧର ପାଖକୁ ।

ନିରଂଜନ ॥ ଯଦି ତା' କଥା ମୁଁ ନଜାଣେ, ତା' ହେଲେ ସତ କହୁଛି ତାକୁ କେବେ ସାଙ୍ଗରେ ନେବିନି ।

ବିଶାଳବାହୁ ॥ ଆମେ ତାକୁ ଦେଖିବାକୁ ପାଇଥିଲୁଁ ।

ନିରଂଜନ ॥ ମୁଁ ବି ସେମିତି ଦେଖିବାକୁ କୁହି ଗଲି ।

ବିଦ୍ୟାଧର ॥ ଆଜ୍ଞ ନିଶ୍ଚୟ ଦୈବାତ୍‌ର ସଂଯୋଗରେ ତା' ହାତ ବାଜି
ଜଣେ ଜଣେ ଓଠ ମୁହାଁରୁ ମଣିଷ ମୁହାଁ ହେଲେ ।

ନିରଂଜନ ॥ ଧରନ୍ତୁ ତାକୁ ସାଙ୍ଗରେ ନେଇ ମୁଁ ରାଜଧାନୀକୁ ଗଲି ।
ସେଠି ପହଞ୍ଚୁ ପହଞ୍ଚୁ ଦୈବାତ୍ ରାଜାଙ୍କ ସାଙ୍ଗରେ ଭେଟ
ହୋଇଗଲା । ଠିକ୍ ସେତିକିବେଳକୁ ଦୈବାତ୍ ତାଙ୍କ
ଅଣ୍ଟାରେ ଖଣ୍ଡା ଥିଲା । ଆଉ ଦୈବାତ୍ ମୋ' ବେକ ତାଙ୍କ
ଖଣ୍ଡା ତଳେ ପଡ଼ିଗଲା, ତା' ହେଲେ ଦେଖ ନାଁ ନିରଂଜନ !
ଦ୍' ଜଣଯାକ ଏକାବେଳକେ ସଫା ।

ଏଇ ସମୟରେ ଘୁମ୍ପା ଭିତରୁ ବାହାରି ଆସିଲେ
ଧୁରନ୍ଧର ଏବଂ ଗୋଟିଏ ଝିଅ, ଯାହାର 'ନାଁ' 'ଦେବୀ' ।
ଦେବୀ, ପତଳା ଝିଅଟି ଯାହାର ଏକମାତ୍ର ଦର୍ଶନୀୟ
କହିବ ତା' ଆଖି ଦୁଇଟି । ତା ଆଖି ଦୁଇଟି ବଡ଼ ବଡ଼,
କିନ୍ତୁ କ୍ଲାନ୍ତ, ଅବସନ୍ନ । ଧୁରନ୍ଧର ତା' ହାତ ଧରି
ଏମାନଙ୍କ ପାଖକୁ ଆଗେଇ ଆସିଲା ।

ବିଦ୍ୟାଧର ॥ ହେଇ, ସେ ଆସିଲାଣି ।

ତା' କଥାରେ ସମସ୍ତେ ବୁଲି ଅନେଇଲେ ଦେବୀ
ଆଡ଼କୁ । ସେ କିନ୍ତୁ ଏମାନଙ୍କୁ ଅନେଇଲାନି । ତା'ର
ଦୃଷ୍ଟି ସମ୍ମୁଖକୁ ପ୍ରସାରିତ, ଯେପରି ଅନେକ ଦୂରକୁ
ପ୍ରସାରିତ । ମୁଣ୍ଡର ବାଳ ଖୋଲାଯାଇ ପିଠି ଏବଂ ପିଠି
ଡେଇଁ ଜଙ୍ଘ ପର୍ଯ୍ୟନ୍ତ ପଡ଼ିଛି । ତା' ଦେହରେ ଖଣ୍ଡିଏ
ଶାଢ଼ୀ ଏପରି ଗୁଡ଼ା ହୋଇଛି ଯେ, ମନେ ହେବ ଯେପରି
ଝିଅଟି ଆଦୌ ଶାଢ଼ୀ ପିନ୍ଧି ଜାଣେନି କିମ୍ବା ପରିପାଟି
କରି ପିନ୍ଧିବାର-ସଉକ ତା'ର ଆଦୌ ନାହିଁ । ସେ
ଗୋଟିଏ ମୁହୂର୍ତ୍ତ ମାତ୍ର ଏମାନଙ୍କ ପାଖରେ ଠିଆ ହେଲା,
ଏମାନେ ସମସ୍ତେ ସ୍ତବ୍ଧ । ତା' ପରେ ଧୀରେ ଧୀରେ
ଆଗେଇ ଚାଲି ଗୋଟିଏ କୋଣକୁ । ସେଠି ସେ

ଅବନ୍ତିକା ବୃକ୍ଷେ ତଳେ ବସି ପଡ଼ିଲା ଏବଂ ଆଙ୍ଗୁଠିରେ ମାଟି ଉପରେ ଗୁଡ଼ାଏ ଗାର ଟାଣିବାକୁ ଲାଗିଲା, ଯେପରି ଏକ ଶିଶୁ, ଧୂଳିଘର ପାଇଁ ଯୋଜନା କରୁଛି । ନିରଂଜନ 'ଦେବୀ'କୁ ନିରୀକ୍ଷଣ କରୁଥିଲା, ତା'ର ଅଙ୍ଗଭଙ୍ଗୀ, ତା'ର ବ୍ୟବହାର ସବୁ ଲକ୍ଷ୍ୟ କରୁଥିଲା । ଏଥର ସେ ଏମାନଙ୍କୁ ଅନେଇଲା ।

ନିରଂଜନ ॥ ଆଜି ପର୍ଯ୍ୟନ୍ତ ତାକୁ ପଚାରିବାର ସୁଯୋଗ ଦେଇ ନଥିଲେ । ଆଜି କରିଛ ପଚାରିବ ?

ବିଦ୍ୟାଧର ॥ ପଚାର ।

ନିରଂଜନ ଟିକିଏ ଦ୍ୱିଧା କଲା । ଥରେ ଦେବୀକୁ ଅନେଇଲା, ପୁଣି ଏମାନଙ୍କୁ ଅନେଇଲା । ତା'ପରେ ଧିରେ ଧିରେ ଆଗେଇଗଲା ଦେବୀ ପାଖକୁ । ତା' ପାଖରେ ପହଞ୍ଚି ସେମିତି ମାଟି ଉପରେ ବସି ପଡ଼ିଲା । ତା' ଟାଣୁଥିବା ଗାରକୁ ଝୁଙ୍କି ପଡ଼ି କରି ଦମସ୍ତ ଦେଖିଲା । ପୁଣି ତାକୁ ଖୁବ୍ ମନୋଯୋଗ ଦେଇ ଦେଖି ଦେଖି ପଚାରିଲା,

ନିରଂଜନ ॥ ତୁ କ'ଣ ସତରେ କଥା କହିପାରୁନୁ ଝିଅ ?

ଦେବୀ ଗାର ଟାଣୁ ଟାଣୁ ଟିକିଏ ଥମକି ଗଲା । ତା' କଥାରେ ନୁହେଁ, ଶବ୍ଦରେ ସେ ଯେପରି ତା' କାମ ବନ୍ଦ କରି ଦେଲା । କିନ୍ତୁ ମୁହଁରେ କୌଣସି ବିକାର ନାହିଁ । ସେଇ ନିର୍ବାକ୍ ନିର୍ବେଦ ମୁହଁ, ଯୋଉ ମୁହଁରେ କୌଣସି ଅଭିବ୍ୟକ୍ତି ନାହିଁ । ସେ ଟିକିଏ ମୁହଁ ଉଠେଇ ଚାହିଁଲା ନିରଂଜନ ଆଡ଼କୁ । କିନ୍ତୁ ମୁହୂର୍ତ୍ତିକ ପାଇଁ । ପୁଣି ମୁହଁ ବୁଲେଇ, ମୁଣ୍ଡ ଝୁଙ୍କେଇ ଗାର କାଟିବାରେ ଲାଗିଲା ତଳେ । ନିରଂଜନ କିନ୍ତୁ ତଥାପି ତାକୁ ପଚାର ବୁଲିଥାଏ, ଏଥର ଅଳ୍ପ ଟିକିଏ ଜୋର୍ ଗଳାରେ,

ନିରଂଜନ ॥ ପାଟିରେ ଘା' ହୋଇଛି ? ଗଳା ଫୁଲିଛି ? ଗଳାରେ କିଛି
ଅଟକି ଯାଇଛି ?

ତଥାପି ନୀରବ ଦେବୀ । ତଥାପି ସେଇ ଅଭିବ୍ୟକ୍ତିହୀନ
ମୁହଁ । ନିରଂଜନ ହତାଶ ହୋଇ ପଡ଼ିଲା । ସେ
ଦେବୀକୁ କିଛି ସମୟ ଲକ୍ଷ୍ୟ କଲା, ପୁଣି ଏମାନଙ୍କୁ
ଅନେଇଲା,

ବିଦ୍ୟାଧର ॥ ଅଯଥାରେ ପଚାରୁଛ । ଆମେ ଅନେକ ଚେଷ୍ଟା କରି ସାରିଚୁ ।
ଫଳ କିଛି ହୋଇନି ।

ନିରଂଜନ ଦେବୀ ପାଖରୁ ଉଠି ଆସି, ବିଦ୍ୟାଧର,
ବିଶାଳବାହୁ, ଧୂରନ୍ଧର ଠିଆ ହୋଇଥିବା ଜାଗାକୁ
ଫେରି ଆସିଲା ।

ନିରଂଜନ ॥ ତାକୁ ପାଇଲେ କୋଉଠୁ ? ସବୁବେଳେ ସେ କାହିଁକି ଗାର
ଟାଣୁଛି ?

ଧୂରନ୍ଧର ॥ ସେ କିଛି ଲେଖୁଛି ଯାହା ଆମେ ବୁଝି ପାରୁନୁ । ତା' ଲେଖା
ଭିତରେ ସେ କିଛି ଇଙ୍ଗିତ ଦବାକୁ ଚାହୁଁଛି, ଆମେ ପଢ଼ି
ପାରୁନୁ ।

ନିରଂଜନ ॥ ଇମିତିକା ଭାଷା, ଯାହା ଆମେ କେହି ଜାଣିନୁ ?

ବିଦ୍ୟାଧର ॥ ମୁଁ ଜଣେ ଭାଷାବିତ୍ । ଏ ରାଜ୍ୟ ଏବଂ ଆଖପାଖ ରାଜ୍ୟର
ଭାଷା ମୁଁ ଜାଣେ । ମୁଁ ପଢ଼ି ପାରିଲିନି । ଟିକିଏ ବସିଗଲେ,
ସେ ଏମିତି ଲେଖିବା ଆରମ୍ଭ କରିଦିଏ । ଆଙ୍ଗୁଠିରେ
ନହେଲେ ହାତ ପାଖରେ ଯାହା ପାଏ । ଆମେ ଯୋଉଦିନ
ତାକୁ ପାଇଲୁ, ସେଦିନ ସେ ଅଙ୍ଗାରରେ ଲେଖୁଥାଏ,
ଗୁମ୍ଫାର ଚଟାଣରେ ।

ନିରଂଜନ ॥ ଆପଣଙ୍କ ଗୁମ୍ଫା ?

ବିଦ୍ୟାଧର ॥ ଗୁମ୍ଫା ବି ନିଜର ନୁହେଁ । ଜଣେ ଏଠୁ ମଣିଷ ହେଇ ଯାଏ ଆଜି ମରେ । ଧରା ପଡ଼ିଯିବା ଭୟରେ ଆମକୁ ଗୁମ୍ଫା ବି ବଦଳେଇବାକୁ ହୁଏ । ଭିନୋଟି ବଣ୍ଡ ଲୋକ ନିଜର ନିରା-ପତ୍ତା ପାଇଁ ଏ ଗୁମ୍ଫାରୁ ସେ ଗୁମ୍ଫାକୁ ।

କଥା କହୁଁ କହୁଁ ହଠାତ୍ ସ୍ତବ୍ଧ ହୋଇଗଲେ ବିଦ୍ୟାଧର । ଯେପରି ସେ ପୁରୁଣା ସ୍ମୃତିକୁ ମନେ ପକେଇବାକୁ ଚେଷ୍ଟା କରୁଥିଲା । ଅନେକ ଦିନ ତଳର ଘଟି ଯାଇଥିବା ଘଟଣାକୁ ସେ ବର୍ତ୍ତମାନକୁ ଟାଣି ଆଣିବାକୁ ଚେଷ୍ଟିତ ଥିଲା । ଯେଣୁ ତା'ର ବର୍ତ୍ତମାନର କଥା ସବୁ ପ୍ରାୟ ସ୍ମୃତିଚାରଣ ଭଳି ।

ବିଦ୍ୟାଧର ॥ ସେଦିନ ବି ଗୁମ୍ଫା ଖୋଜୁ ଖୋଜୁ ହଠାତ୍ ସନ୍ଧାନ ମିଳିଗଲା । ଆମେ ସେଇ ଅନ୍ଧାର ଭିତରେ, ହାତରେ ଦୀପଟିଏ ଧରି ଗୁମ୍ଫା ଭିତରକୁ ନଇଁ ନଇଁ ଚାଲିଥିଲୁ ।

ସମସ୍ତେ ଫେରି ଯାଉଥିଲେ ଅତୀତକୁ । ଯେପରି ଏ ତିନିଜଣ ଆଉ ବର୍ତ୍ତମାନରେ ନାହାନ୍ତି । ଅତୀତର ସେଇ ତିନିଜଣ, ଗୁରୁଣ୍ଡି ଗୁରୁଣ୍ଡି, ହାତରେ ଦୀପଟିଏ ଧରି, ହାତ ଧରାଧରି ହୋଇ ଗୁମ୍ଫାରୁ ଗୁମ୍ଫାକୁ ଆଗେଇ ଚାଲିଛନ୍ତି । ବର୍ତ୍ତମାନ ନିରଂଜନ ସ୍ଥାଣୁ, ଯେପରି ସେ ଅତୀତର ଏକ କାହାଣୀ ଶୁଣୁଚି । ଏମାନେ ଚାଲୁଚାଲୁ ହଠାତ୍ ସାମନାରେ ଦେବୀକୁ ଦେଖିଲେ । ଏବଂ ଏହା ଏତେ ଅପ୍ରତ୍ୟାଶିତ ଥିଲା ଯେ, ସେମାନେ ବିସ୍ମୟରେ ବିହ୍ୱଳ ହେଇ ଉଠିଲେ । ଅନେକ ଅନେକ ଦିନ ପରେ ସେମାନେ ଯେପରି ଗୋଟାଏ ମଣିଷ ମୁହଁ ଦେଖୁଚନ୍ତି ଏଇ ଗୁମ୍ଫା ଭିତରେ । ଆଗରେ ଚାଲୁଥିବା ଲୋକଟି ଦୀପଟିକୁ ତଳେ ଥୋଇ ଦେଲା । ତା' ପରେ ସଂଘବଦ୍ଧ ହୋଇ ସେମାନେ ଦେବୀ ଆଡ଼କୁ ଆଗେଇ ଗଲେ । ତାକୁ ଘେରିଗଲେ ।

ତାକୁ ଖୁବ୍ ଧ୍ୟାନସ୍ଥ ଭାବରେ ଲକ୍ଷ୍ୟ କଲେ । ଦେବୀ ସେମିତି ମାଝଖରେ ତଣ୍ଟାଣରେ ଗାର ଟାଣି ଚାଲିଥାଏ । କିଛି ସମୟ ପରେ ସେମାନେ ପରସ୍ପରକୁ ଦେଖିଲେ, ମୁହଁ ଝଟେଇ ।

ଧୁରନ୍ଧର ॥ ଓଠ ମୁହାଁ ନୁହଁ, ମଣିଷ ।

ବିଶାଳବାହୁ ॥ ପୁରୁଷ ନୁହଁ, ସ୍ତ୍ରୀ ।

ବିଦ୍ୟାଧର ॥ ଇଏ କିଏ ?

ଧୁରନ୍ଧର ॥ ଏ ରାଜ୍ୟର ନୁହେଁ, ହୋଇଥିଲେ ଓଠ ମୁହାଁ ହୋଇଥା'ନ୍ତା ।

ବିଶାଳବାହୁ ॥ ହୋଇଥିଲେ ଗୁମ୍ଫାର ସନ୍ଧାନ ପାଇ ନଥା'ନ୍ତା ।

ବିଦ୍ୟାଧର ॥ ସନ୍ଧାନ ପାଇଥିଲେ ଏଠି ନବସି ରାଜାଙ୍କୁ ଖବର ଦେଇ-ଥା'ନ୍ତା ।

ଧୁରନ୍ଧର ॥ ଇଏ କିଏ ?

ବିଶାଳବାହୁ ॥ କ'ଣ ଲେଖୁଚି ?

ପୁଣି ସେମାନେ ଝୁଙ୍କି ପଡ଼ିଲେ ଦେବୀ ଆଡ଼କୁ । ଦେବୀ ସେମିତ ଲେଖି ଚାଲିଥାଏ । କୌଣସି ଭ୍ରୂକ୍ଷେପ ନାହିଁ ।

ବିଦ୍ୟାଧର ॥ ତମେ କିଏ ?

ଧୁରନ୍ଧର ॥ ତମେ କୋଉଠୁ ଆସିଚ ?

ବିଶାଳବାହୁ ॥ ଅନ୍ୟ କୋଉ ରାଜ୍ୟର ଲୋକ ?

ବିଦ୍ୟାଧର ଏଥର ଦେବୀଆଡୁ ମୁହଁ ଫେରେଇ ଅନ୍ୟ-ମାନଙ୍କୁ ଚାହିଁଲା, ଅନ୍ୟମାନେ ମଧ୍ୟ ଦେବୀଆଡୁ ବିଦ୍ୟାଧର ଆଡ଼କୁ ମୁହଁ ଫେରେଇ ନେଲେ ।

ବିଦ୍ୟାଧର ॥ ସେ'ତ କିଛି କହୁନି !

ଧୁରନ୍ଧର ॥ ସେ ହୁଏତ ଆମ ଭାଷା ବୁଝି ପାରୁନି ।

ବିଶାଳବାହୁ ॥ ଇଙ୍ଗିତ କଲେ ହୁଏତ ବୁଝି ପାରିବ ।

ବିଦ୍ୟାଧର ଏଥର ତାଳମାଦଳ ଦେବୀର କାନ ପାଖରେ । ସନ୍ଦର୍ଭ ଦେବୀ ତା' ଆଡ଼କୁ ଅନେଇଲା ତଥାପି ତା' ମୁହଁରେ କୌଣସି ଭାବର ବ୍ୟଞ୍ଜନା ନଥିଲା । ସେ ପୁଣି ଲେଖିବାରେ ନିଜକୁ ନିୟୋଜିତ କଲା । ଧୂରନ୍ଧର ପୁଣିଥରେ ତା' ମୁଣ୍ଡଟେକ ଧରି ତା' ମୁହଁ ବିଦ୍ୟାଧର ଆଡ଼କୁ ବୁଲେଇ ଦେଲା । ଏଥର ବିଦ୍ୟାଧର ହାତର ଇସାରାରେ 'ସେ କିଏ' 'ସେ କୋଉଠୁ ଆସିଛି' 'କ'ଣ ଲେଖୁଛି' ଇତ୍ୟାଦି ଇଙ୍ଗିତ କରିବାକୁ ଲାଗିଲା । ଧୂରନ୍ଧର ତା' ମୁହଁରୁ ହାତ ଉଠେଇ ଆଣିଲା । ଏବେ ଦେବୀ ପୁଣି ସେଇ ଭାବ ଲେଶହୀନ ମୁହଁ ନେଇ ଚଟାଣ ଉପରେ ଗାର ଟାଣିବାକୁ ଲାଗିଲା । ଏମାନେ ହତାଶ ହେଲେ, କାରଣ ବର୍ତ୍ତମାନର ପ୍ରଚେଷ୍ଟା ବିଫଳ ହେଲା । ତେଣୁ ପରସ୍ପରକୁ ଅନେଇବାରେ ଲାଗିଲେ ।

ବିଦ୍ୟାଧର ॥ ସେ ହୁଏତ କଥା କହି ପାରେନି ।

ଧୂରନ୍ଧର ॥ ହୁଏତ ତା'ର ପ୍ରକାଶ କରିବାର ଭଙ୍ଗୀ ତା'ର ଲେଖା ।

ବିଶାଳବାହୁ ॥ ସେ କ'ଣ ଲେଖୁଛି ?

ବିଦ୍ୟାଧର ॥ କିଛି ବୁଝି ହେଉନି ।

ଧୂରନ୍ଧର ॥ ଖାଲି ଗୁଡ଼ାଏ ଅଙ୍କାବଙ୍କା ଗାର । ଗୋଟାକ ଉପରେ ଆଉ ଗୋଟାଏ ଚଢ଼ି ଯାଇଛି । ହୁଏତ ଏ ରାଜ୍ୟର ସମସ୍ତଙ୍କର ଭବିଷ୍ୟତର ଗାର ।

ପୁଣି ଥରେ ତା' ଆଡ଼କୁ ଉତ୍ସୁକ ଅନେଇଲେ ସମସ୍ତେ । ପୁଣି ଥରେ ତାକୁ ଦେଖିଲେ । ତା' ଟାଣୁଥିବା ଗାରକୁ ନିରୀକ୍ଷଣ କଲେ ।

ବିଶାଳବାହୁ ॥ ଏଇ, ତୋ ନାଁ କ'ଣ ?

ବିଦ୍ୟାଧର ॥ ଇଏ କ'ଣ କାହା ଭାଗ୍ୟଲିପି ?

ହଠାତ୍ ଏକ ସମ୍ଭାବନା, ଏକ ଆବିଷ୍କାର ଧୂରନ୍ଧରଙ୍କୁ ଉଲ୍ଲସିତ କଲା । ଯେପରି ସେ ଆବିଷ୍କାର କରିପାରିଛି ଏଇ ସବୁର ଅର୍ଥ । ତେଣୁ ସେ ଚତ୍କାର କରି ଉଠିଲା ।

ଧୁରନ୍ଧର ॥ ପାଇଛି !

ବିଦ୍ୟାଧର ॥ କ'ଣ ?

ଧୁରନ୍ଧର ॥ ଏଇ ସବୁ ଅଙ୍କାବଙ୍କା ଅନାବନା ଗାରର ଅର୍ଥ ।

ବିଦ୍ୟାଧର ॥ କ'ଣ ?

ଧୁରନ୍ଧର ॥ ସାଂକେତିକ ଲିପି । ଗୋଟିଏ ଗାର ଉପରେ ଆଉ ଗୋଟିଏ ଗାର । ଛନ୍ଦାଛନ୍ଦି ହୋଇ, ଶେଷ ଆଡ଼କୁ ମାତ୍ର ଗୋଟିଏ ଗାର । ଆଉ ଅଙ୍କାବଙ୍କା ନୁହେଁ । ସରଳ । ବଞ୍ଚିବାକୁ ହେଲେ, ସରଳ ଭାବରେ, ନିର୍ଦ୍ଦିଷ୍ଟ ଭାବରେ ବଞ୍ଚିବାକୁ ହବ ।

ଧୂରନ୍ଧରର ଏଇ କଥାରେ, ବିଦ୍ୟାଧର ଅନ୍ୟ ଏକ ସମ୍ଭାବନାର ସୂତ୍ର ପାଇଗଲା ଯେପରି । ତା'ର ଅନ୍ୟ ଏକ ଆବିଷ୍କାର, ଅନ୍ୟ ଏକ ତଥ୍ୟ । ତେଣୁ ସେ ମଧ୍ୟ ଧୂରନ୍ଧର ପରି ଉଲ୍ଲସିତ ହୋଇ ଚତ୍କାର କରି ଉଠିଲା ।

ବିଦ୍ୟାଧର ॥ ପାଇଛି !

ବିଶାଳବାହୁ ॥ କ'ଣ ?

ବିଦ୍ୟାଧର ॥ ଅର୍ଥ । ବଞ୍ଚିବାକୁ ହେଲେ ଯୁଦ୍ଧ କରିବାକୁ ପଡ଼ିବ । ନିଜର ପ୍ରତିଷ୍ଠା ପାଇଁ, ଗଣର ମୁକ୍ତି ପାଇଁ ଯୁଦ୍ଧ । ଗୋଟିଏ ଗାର ଉପରେ ଆଉ ଗୋଟିଏ ଗାର । ଅଙ୍କାବଙ୍କା, ଅସ୍ଥିର । ଶେଷରେ ବିଜୟ, ତେଣୁ ସିଧା ସରଳ ।

ବିଶାଳବାହୁ ॥ ନାଁ ।

ଧୁରନ୍ଧର ॥ ତା' ହେଲେ ?

ବିଶାଳବାହୁ ॥ ଇଏ ସବୁ ଆମର ଧାରଣା ।

ବିଦ୍ୟାଧର ॥ ତା' ହେଲେ ?

ବିଶାଳବାବୁ ॥ ତା' ନିଜ ପାଖରୁ ଶୁଣିବାକୁ ପଡ଼ିବ ।

ଧୁରନ୍ଧର ॥ ସେ'ତ କିଛି କହୁନି । ଏକାବେଳକେ ଚୁପ୍ ଚାପ୍ ।

ବିଶାଳବାବୁ ॥ ତାକୁ କଥା କୁହାଇବାକୁ ପଡ଼ିବ । ତା'ର ମୁହଁରେ ଅଛି, ତା' କଥାର ଅର୍ଥ !

ଧୁରନ୍ଧର ॥ ଏଇ, ଏଇ ଝିଅ !

ବିଶାଳବାବୁ ॥ ତା'ର ତ ଗୋଟାଏ ନାଁ ଥିବ !

ବିଦ୍ୟାଧର ॥ ଯଦି ନଥାଏ, ଖାଲି ଗୋଟାଏ ନାଁ ଦବା ।

ବିଶାଳବାବୁ ॥ ଆଜିଠୁ, ଏଇ ଗୁମ୍ଫାରେ ତା'ର ଜନ୍ମ ହେଲା । ଆମ ଅବସ୍ଥାର ଉଲଟା ।

ବିଦ୍ୟାଧର ॥ ରମା ?

ଧୁରନ୍ଧର ॥ ଲକ୍ଷ୍ମୀ ?

ବିଶାଳବାବୁ ॥ ପାର୍ବତୀ ବା ଦୁର୍ଗା ?

ବିଦ୍ୟାଧର ॥ ଆମେ ଧରି ନେଇଛେ, ସେ ଦେବୀ ପ୍ରେରିତ ।

ବିଶାଳବାବୁ ॥ ତେଣୁ...

ଧୁରନ୍ଧର ॥ ତା' ନାଁ ଦିଆଯାଉ...

ବିଦ୍ୟାଧର ॥ ଦେବୀ ।

ବିଶାଳବାବୁ ॥ ଦେବୀ !

ଧୁରନ୍ଧର ॥ ହଁ, ଦେବୀ ।

ପୁଣି ସେମାନେ ଦେବୀର ଚାରିପଟେ ନାଚିବାକୁ ଲାଗିଲେ । ତାକୁ ଚାରି ପାଖରୁ ଘେରି ବସିଗଲେ । ପୁଣି ଏକ ନୂତନ ଭାଷା, ନୂତନ ଉଦ୍ୟମ ନେଇ ତାକୁ କଥା କୁହାଇବାର ଚେଷ୍ଟା କଲେ ।

ବିଦ୍ୟାଧର ॥ ଦେବୀ, କୁ କଥା କହୁନୁ କାହିଁକି ? ଆମେ ତୋତେ ଖାଇବାକୁ ଦେବୁଁ । ପିନ୍ଧିବାକୁ ଦେବୁଁ । ତୋତେ ସୁଖ ଆଉ ଆନନ୍ଦରେ ରଖିବୁଁ । କଥା କହ !

ଧୂରନ୍ଧର ॥ କଥା କହ । ତୋତେ ଆମେ ସବୁ ବିପଦରୁ ରକ୍ଷା କରିବୁଁ । ଆମକୁ ମୁକ୍ତି ମିଳିଲେ, ତୋତେ ଏ ରାଜ୍ୟରେ ପ୍ରତିଷ୍ଠା କରିବୁଁ । କଥା କହ ଦେବୀ, କଥା କହ !

ବିଶାଳବାହୁ ॥ କଥା କହ । ଯଦି ଆମ ସମସ୍ତଙ୍କ ମୁକ୍ତିର ସୂତ୍ର ତୋ' ଗାରରେ ଲେଖା ହୋଇଛି, ତା' ହେଲେ ଆମକୁ କହି ଦେ, କଥା କହ ! ଦେବୀ, କଥା କହ !

କିନ୍ତୁ ଦେବୀ ସେଇପରି ନିର୍ବେଦ, ନିର୍ନିମେଷ । ଏମାନଙ୍କର କଥା ସବୁ ଯେମିତି କାନ୍ଥରେ ବାଜି ଫେରି ଆସୁଥିଲା । ଏମାନେ ପୁଣି ହତାଶ ଯେପରି ଆଉ କୌଣସି ଉପାୟ, ତାକୁ କୁହାଇବାକୁ, ଏମାନଙ୍କ ମନକୁ ଆସୁ ନଥିଲା । ଏମାନେ ପରସ୍ପରକୁ ଚାହିଁଲେ ।

ବିଦ୍ୟାଧର ॥ ନାଁ, ସେ କଥା କହିବନି ।

ଧୂରନ୍ଧର ॥ ହୁଏତ ସାଧାରଣ ଭାବରେ କହି ନପାରେ । କିନ୍ତୁ କୋଉଠି ନା କୋଉଠି ତା' କଥା କହିବାର ସୂତ୍ର ଅଛି ।

ବିଶାଳବାହୁ ॥ ଆଚ୍ଛା ତାକୁ ଯଦି କଷ୍ଟ ଦିଆଯାଏ ?

ହଠାତ୍ ପୁଣି ଏକ ନୂତନ ସମ୍ଭାବନା ଏମାନଙ୍କୁ ପ୍ରଲୁବ୍ଧ କଲା ।

ବିଦ୍ୟାଧର ॥ ହଁ, ଯଦି କଷ୍ଟ ଦିଆଯାଏ !

ବିଶାଳବାହୁ ॥ ହଁ, ତାକୁ କଷ୍ଟ ଦିଆଯାଉ । କଷ୍ଟ, ନିଷ୍ଠୁରତମ କଷ୍ଟ ।

ଧୂରନ୍ଧର ॥ ଯନ୍ତ୍ରଣା, ନିଷ୍ଠୁରତମ ଯନ୍ତ୍ରଣା—

ଏମାନେ ଆସ୍ତେ ଆସ୍ତେ ହିଂସ୍ର ହୋଇ ଉଠୁଥିଲେ । ଯେପରି ଏଇ ମୁହୂର୍ତ୍ତରେ ସେଇ ରୋଗା ଝିଅଟି ପ୍ରତି ସେମାନଙ୍କର କୌଣସି ମାୟାମମତା ନଥିଲା । ଏମାନେ ଜୋର୍ କରି ତା' ବସିଥିବା ଜାଗାରୁ ଉଠାଇ ତାକୁ ଠିଆ କରେଇ ଦେଲେ । ତାକୁ ନାନାଦି କଷ୍ଟ ଏବଂ ଦଣ୍ଡ ଦବାକୁ ଲାଗିଲେ । ତା' ଚାରି ପାଖରେ ଘୂରି ଘୂରି ଚକ୍କରକାଟି ତା' ମନରେ ବରନ୍ତ କମ୍ପା ଭୟ ଉଦ୍ରେକ କରେଇବାକୁ ଚେଷ୍ଟା କଲେ ।

ବିଶାଳବାହୁ<br>
ଧୁରନ୍ଧର<br>
ବିଦ୍ୟାଧର } କଥା କହ ଦେବୀ, କଥା କହ, କଥା କହ, କଥା କହ, କଥା କହ...

ଦେବୀ ସେଇପରି ନିର୍ବିକାର, ସେଇପରି ଭାବହୀନ ମୂର୍ତ୍ତି । ତା' ମୁହଁରେ ଯେପରି ଏକ ସମୟରେ କୌଣସି ଉଲ୍ଲାସ ବା ଆନନ୍ଦ ନଥିଲା, ବର୍ତ୍ତମାନ ସେଇପରି କୌଣସି ଯନ୍ତ୍ରଣା ବା କଷ୍ଟର ଚିହ୍ନ ନଥିଲା । ଏମାନେ ତା' ଚାରିପାଖରେ ଘୂରି ଘୂରି ଚକ୍କର କାଟୁଥିବା ସମୟରେ, ସେ ପୁଣି ବସିପଡ଼ିଲା ଏବଂ ଚଟାଣରେ ଗାର କାଟିବାରେ ଲାଗିଲା । ଏମାନେ ଥକି ପଡ଼ିଥିଲେ । ଏମାନଙ୍କ ମୁଣ୍ଡ, ଦୁଃଖରେ, ହତାଶରେ, କ୍ଳାନ୍ତିରେ ଛାତି ଉପରକୁ ଝୁଲି ପଡ଼ିଥିଲା । ସେମାନେ କିଛି ସମୟ ଚୁପ୍ ଚାପ୍ ହୋଇଗଲେ । ଯେପରି ସମସ୍ତ କହିବାର ଶକ୍ତି ସେମାନଙ୍କର ନିଃଶେଷ ହୋଇ ଯାଇଥିଲା । କିଛିଏ ପରେ ସେମାନେ ମୁଣ୍ଡ ଉଠେଇଲେ । ପରସ୍ପରକୁ ଆହତ ଅବସନ୍ନ ଆଖିରେ ଅନେଇଲେ । ଏବଂ ହତାଶ ଜର୍ଜରିତ କଣ୍ଠରେ ପରସ୍ପରକୁ କହିବାରେ ଲାଗିଲେ ।

ବିଦ୍ୟାଧର ।। ଏତେ ପରେ ବି ସେ କଥା କହିଲାନି ।

ବିଶାଳବାହୁ ।। ତା'ର କ'ଣ ହର୍ଷ ବିଷାଦ କିଛି ନାହିଁ ?

ଧୁରନ୍ଧର ॥ କିଛି ଜାଣି ହେଉନି ।

ବିଦ୍ୟାଧର ॥ କିଛି ଜାଣିବା ପର୍ଯ୍ୟନ୍ତ ତାଙ୍କୁ ଆମ ସାଙ୍ଗରେ ରହିବାକୁ ପଡ଼ିବ ।

ବିଶାଳବାହୁ ॥ ତା'ହେଲେ ଅପେକ୍ଷା କରିଯାଉ ସେ କଥା କହିବା ପର୍ଯ୍ୟନ୍ତ !

ଧୁରନ୍ଧର ॥ ହଁ, ଅପେକ୍ଷା କରିଯାଉ ।

ବିଶାଳବାହୁ ॥ ଅପେକ୍ଷା କରିଯାଉ ।

ବିଦ୍ୟାଧର ॥ ଅପେକ୍ଷା, ଖାଲି ଅପେକ୍ଷା—

ଅତୀତର ସ୍ମୃତିଚାରଣ ଶେଷ ହେଲା । ଏମାନେ ପୁଣି ଫେରି ଆସିଲେ ବର୍ତ୍ତମାନକୁ । ଠିଆ ହୋଇ ଶୁଣୁଥିବା ନିରଂଜନ ପାଖକୁ ଏମାନେ ଫେରି ଆସିଲେ, ଦେଖାକୁ ଛାଡ଼ି । ପୁଣି ସେମାନେ ନିରଂଜନ ପାଖରେ । ନିରଂଜନର ଗପ ଶୁଣିବା ଶେଷ ହୋଇଥିଲା । ସେମାନେ ନିରଂଜନକୁ ବର୍ତ୍ତମାନର କଥା ଶୁଣେଇବାକୁ ଲାଗିଲେ ।

ବିଦ୍ୟାଧର ॥ ସେ କଥା କହିଲାନି । ଆମର ସବୁ ଚେଷ୍ଟା ବ୍ୟର୍ଥ ହେଲା ।

ଧୁରନ୍ଧର ॥ କିନ୍ତୁ ଆମେ ଜାଣୁ, ତା'ର କଥା କହିବା ଭିତରେ ଲୁଚି ରହିଚି, ଆମର ମୁକ୍ତି ଆଉ ସମୂହ ଭାବରେ ଓଟମାନଙ୍କର ମଣିଷକୁ ରୂପାନ୍ତର ।

ବିଦ୍ୟାଧର ॥ ଆମେ ତାକୁ ହସେଇବାକୁ ଚେଷ୍ଟା କଲୁଁ, ସେ ହସିଲାନି ।

ଧୁରନ୍ଧର ॥ କନ୍ଦେଇଲୁଁ, କାନ୍ଦିଲାନି ।

ବିଶାଳବାହୁ ॥ ଭୟ ଦେଖାଇଲୁଁ, ଡରିଲାନି ।

ବିଦ୍ୟାଧର ॥ କିନ୍ତୁ ଆମର ମନେହେଲା, ତା'ର କଥା କହିବା ଦରକାର ।

ବିଶାଳବାହୁ ॥ ଏ ଗୁମ୍ଫାର ଅନ୍ଧାର ଭିତରେ ନୁହେଁ, ଖୋଲା ପଡ଼ିଆକୁ, ସମସ୍ତଙ୍କ ଭିତରକୁ ଚାଲିଗଲେ, ସେ କଥା କହିବ ।

ଧୁରନ୍ଧର ॥ ହୁଏତ ତା' କଥା ଭିତରେ ଅଛି, ଆମ ସମସ୍ତଙ୍କର ମୁକ୍ତିର ସୂତ୍ର ।

ବିଦ୍ୟାଧର ॥ ଉପାୟ ଖୋଜିବାକୁ ଲାଗିଲୁଁ । କେମିତି ସେ ଯିବ ! କାହା ସାଙ୍ଗରେ !

ବିଶାଳବାହୁ ॥ ବହୁତ ଚିନ୍ତା କରି ଶେଷରେ ଠିକ୍ କଲୁଁ, ଆଉ ଜଣକୁ ଗୁମ୍ଫା ଭିତରକୁ ଆଣିବାକୁ ପଡ଼ିବ । ଦେବୀ ସାଙ୍ଗରେ ରଖି ତାକୁ ମଣିଷ କରିବାକୁ ପଡ଼ିବ । ତା'ର ସାଙ୍ଗରେ ଦେବୀକୁ ଗୁଡ଼ ଦିଆଯିବ ।

ନିରଂଜନ ॥ ତେଣୁ ମୋ'ର କପାଳ ଫାଟିଲା ସିନା, ହେଲେ ଦେବୀ କିଏ, ସେ କଥା ଜଣା ପଡ଼ିଲାନି ।

ଏଥର ପୁଣି ସମସ୍ତଙ୍କର ଦୃଷ୍ଟି ପଡ଼ିଲା ଦେବୀ ଆଡ଼କୁ । ଦେବୀ କିନ୍ତୁ ସେଇପରି ନିର୍ଲିପ୍ତ, ନିଜ କାମରେ ଅର୍ଥାତ୍ ସେଇ ଗାର ଟାଣିବାରେ ବ୍ୟସ୍ତ । ଯେପରି ଏତେ ସବୁ ଘଟଣା ଯାହା ଘଟିଥିଲା, ତା ସାଙ୍ଗରେ ତା'ର କୌଣସି ସଂପର୍କ ନାହିଁ । ନିଜ କାମଛଡ଼ା ଅର୍ଥାତ୍ ଗାରଟାଣିବା ଛଡ଼ା ଯେପରି ତା'ର ଆଉ କୌଣସି କାର୍ଯ୍ୟ ଅବଶିଷ୍ଟ ନାହିଁ । ତିନିଜଣ ଯାକ ନିରଂଜନକୁ ଛାଡ଼ି ପୁଣି ଦେବୀ ପାଖକୁ ଆସିଲେ । ମମତା ଭରା ଆଖିରେ ଦେବୀକୁ ଚାହିଁଲେ ଏବଂ ଅନୁନୟ କରିବା ଭଙ୍ଗୀରେ ଉଚ୍ଚାରଣ କଲେ ।

ବିଦ୍ୟାଧର ॥ ଦେବୀ, ତୁମେ କିଏ ଆମେ ଜାଣୁନା । ତମେ କଥା କହି ପାର କି ନପାର, ତା'ବି ଜାଣୁନା !

ଧୁରନ୍ଧର ॥ ତୁମକୁ ଆମେ ଅନେକ ପ୍ରାର୍ଥନା କରିଚୁଁ, ତମେ ଶୁଣି ନାହଁ ।

ବିଶାଳବାହୁ ॥ ଅନେକ ଦଣ୍ଡ ଦେଇଚୁଁ, କଷ୍ଟ ଦେଇଚୁଁ, କାଢ଼ି ନାହଁ ।

ବିଦ୍ୟାଧର ॥ ନିରଂଜନ ପରି ତମେ ଆମର ଶେଷ ଆଶା, ଶେଷ ଭରସା ।

ଧୁରନ୍ଧର ॥ ତମେ ତା' ସାଙ୍ଗରେ ରହିବ । ମନେରଖ, ତା'ର ମୁକ୍ତି

ନାହିଁ, ଯାହା ସ୍ୱୟଂ ନ ବଦଳେ । ତା'ର ମୁକ୍ତି ନାହିଁ, ଯାହା ଆମେ ମୁକ୍ତ ନହୁଁ । ତା'ର ମୁକ୍ତି ନାହିଁ, ଯାହା ତମେ ମୁହଁ ନ ଖୋଲ ।

ନିରଂଜନ ॥ ଏଏ ତ ଅନେକ ସର୍ତ୍ତ !

ବିଦ୍ୟାଧର ॥ ମୁକ୍ତିର ସର୍ତ୍ତ ।

ନିରଂଜନ ॥ ତା' ହେଲେ ଯିବ ?

ବିଦ୍ୟାଧର ॥ ଯାଅ । କିନ୍ତୁ ମନେରଖ, ତା' ମୁହଁ ଖୋଲିବାକୁ ପଡ଼ିବ । ତାକୁ କଥା କୁହେଇବାକୁ ପଡ଼ିବ ।

ନିରଂଜନ ॥ ସେ ଯଦି ମୋ ହାତରେ ମରିଯାଏ, ତା' ହେଲେ ଆପଣ କ'ଣ କରିବେ ?

ଶଶୀକାନ୍ତ ॥ ତା' ହାତ ବାନ୍ଧ ସମସ୍ତେ ବଦଳି ଗଲେ, ତା' କଥା କହିବାରେ ଆମେ ସମସ୍ତେ ମୁକ୍ତି ପାଇଲେ, ଆମର ଆଉ କିଛି ଦୁଃଖ ରହିବନି ।

ଧୁରନ୍ଧର ॥ ଆମେ ଆଉ ନିଜକୁ ଅସହାୟ ମନେ କରିବୁ ନାହିଁ ।

ବିଦ୍ୟାଧର ॥ ତେଣୁ ତୁମେ ତାକୁ ନେଇଯାଅ ।

ନିରଞ୍ଜନ ଦେବପାଣିକୁ ଆଗେଇ ଆସିଲା, କିଛିଟା ଦ୍ୱିଧା, କିଛିଟା ସଂଶୟ ନେଇ ସେ ଏମାନଙ୍କୁ ଅନାଇଲା । ତା'ପରେ ମନ ସ୍ଥିର କରି ଦେବାର ହାତ ଧରିଲା ।

ନିରଂଜନ ॥ ଆ' ଝିଅ !

ବିଦ୍ୟାଧର ॥ ଝିଅ ନୁହେଁ, ଦେବୀ !

ନିରଂଜନ ॥ ଆସ !

ତା' ହାତ ଧରି ନିରଂଜନ ତାକୁ ଉଠେଇଲା । ଦେବଙ୍କା କ୍ରମେ ସେ ଠିଆ ହେଲା । ନିରଂଜନ ତା' ହାତ ଧରି ଆଗେଇବାକୁ ଲାଗିଲା । ଦେବୀ ତାକୁ ଅନୁସରଣ

କଲ । କିନ୍ତୁ ସେଇ ଝିଅର ସମ୍ମୁଖ ଦୃଷ୍ଟି । ଯେପରି ସମ୍ମୁଖ
ବ୍ୟତୀତ ଅନ୍ୟ କୌଣସି ଦିଗରେ ଦେଖିବାର କିଛି
ନାହିଁ । ସେମାନେ ଏଇପରି ଏମାନଙ୍କଠାରୁ ଦୂରକୁ ଚାଲି
ଯାଉଥିଲେ, ଏମାନେ ମଧ୍ୟ ଜପରି ସମ୍ମୋହିତ ହୋଇ
ସେମାନଙ୍କ ଚାଲିଯିବାର ଦୃଶ୍ୟ ଉପଭୋଗ କରୁଥିଲେ
କିନ୍ତୁ ହଠାତ୍ ଏମାନଙ୍କର ସ୍ୱବାଜ୍ୟର ହେଲା । ଏମାନେ
ପୁଣି ଦ୍ରୁତ ଗତିରେ ନିରଂଜନ ଆଡ଼କୁ ଅଗ୍ରସର
ହେଲେ । ଅତ୍ୟନ୍ତ ବିକଳ ଏବଂ ଅନୁନୟର କଣ୍ଠରେ
ଡାକିଲେ,

ବିଦ୍ୟାଧର ॥ ନିରଂଜନ !

ନିରଂଜନ ଦେବୀକୁ ଧରି ଆଗଉଥିଲା, କିନ୍ତୁ ବିଦ୍ୟାଧରର
ଡାକରେ ହଠାତ୍ ଠିଆହୋଇ ପଡ଼ିଲା । ଦେବୀ ମଧ୍ୟ
ସେଇପରି ଠିଆହେଲା । ନିରଂଜନ ଏମାନଙ୍କ ଆଡ଼କୁ
ବୁଲିପଡ଼ି ଅନେଇଲା ।

ବିଦ୍ୟାଧର ॥ ଯିବା ପୂର୍ବରୁ କଥା ଦେଇଯାଅ, ଆମକୁ ଯେମିତି ଆଉଥରେ
ଗୁମ୍ଫା ବଦଳେଇବାକୁ ନପଡ଼େ । ଦିନେ ତୁମେ ଶୁଭ ସମ୍ବାଦ
ନେଇ ଫେରି ଆସ ।

ନିରଂଜନ ॥ ସାଙ୍ଗରେ ପତ୍ନୀ ଦେବୀ ଅଛି, ମୋ' ବେକକୁ ପଘା, ଯିବି
କୁଆଡ଼େ !

ଧୁରନ୍ଧର ॥ ଆମେ ବାଟ ଚାହିଁ ବସିଥିବୁଁ ।

ବିଶାଳବାହୁ ॥ ଆମେ ତୁମକୁ ଅପେକ୍ଷା କରିଥିବୁଁ ।

ନିରଂଜନ ॥ ହଉ, କଥା ଦେଉଚି, ମୁଁ ଦିନେ ନା ଦିନେ ପୁଣି ଫେରି
ଆସିବି । ଆସ !

ଦେବୀର ହାତଧରି ସେ ପୁଣି ଆଗେଇଲା । ଏମାନେ
ସେଇଠି ଠିଆହୋଇ ଅନେଇ ରହିଲେ, ଦେବୀ ଆଉ
ନିରଂଜନ ଏମାନଙ୍କର ଦୃଷ୍ଟି ସୀମାରୁ ଅପସରିଲା
ପର୍ଯ୍ୟନ୍ତ । ନିଜ ଅଜାଣତରେ ଏମାନଙ୍କ ହୃଦୟରୁ ଏକ

ଦୀର୍ଘ ନିଃଶ୍ୱାସ ବାହାରି ମିଳେଇଗଲା । ଏମାନେ ଧିରେ ଧିରେ ଗୁମ୍ଫା ଆଡ଼କୁ ଅଗ୍ରସର ହେଲେ । ଯେପରି ଆଉ ଉତ୍ସାହ ନାହିଁ, ଆଉ ଜିଦ୍‌ଖୋର ନାହିଁ ସେ ଫେନ୍‌-ବାରେ । ସେମାନେ ଗୁମ୍ଫାର ଦ୍ୱାରପାଖରେ ପହଞ୍ଚିଲେ । କ୍ଳାନ୍ତ ଅବସନ୍ନ ଭାବରେ ସେଇ ଗୁମ୍ଫା ସାମନାରେ ତିନିଜଣ ଯାକ ବସି ପଡ଼ିଲେ । ତା' ପରେ ନିଜ ମନକୁ ମନ କହିବାକୁ ଲଗିଲେ ।

ବିଦ୍ୟାଧର ॥ ଆମେ ପ୍ରତୀକ୍ଷା କରିବୁଁ, ଏଇ ଗୁମ୍ଫା ଭିତରେ, ଅନ୍ଧାରରେ ।

ଧୁରନ୍ଧର ॥ ସିଧା ହୋଇ ଠିଆ ହବାର ଉଚ୍ଚତା ନାହିଁ । ନିଜକୁ ଦେଖି ପାରିବାର ଆଲୁଅ ନାହିଁ ।

ବିଶାଳବାହୁ ॥ ଧରା ପଡ଼ିଯିବାର ଭୟରେ ଆମେ ଗୁମ୍ଫା ଭିତରେ ଆବଦ୍ଧ । ଖାଲି ଏକମାତ୍ର ଆଶ୍ୱାସନା ଆମେ ମୁକ୍ତ ହବୁଁ, ଦିନେ ନା ଦିନେ ।

ଏମାନଙ୍କ ମୁଣ୍ଡ ତଳକୁ ଝୁଲି ପଡ଼ିଥିଲା । ଏମାନେ ଗୁମ୍ଫାର ସେଇ ଦ୍ୱାର ଆଗରେ ଅସହାୟ ଭାବରେ ବସି ରହିଲେ । ଯେପରି ଭିତରକୁ ଉଠି ଯିବାର ସମସ୍ତ ଶକ୍ତି ନିଃଶେଷ । ଠିକ୍ ଏଇ ସମୟରେ ଦୂରରୁ କୋଳାହଳ ଶୁଭିଲା । କବୁ ଜାଲୁଆର ଘଡ଼ଘଡ଼ାଇବା ପାଇଁ ଯେପରି କିଛିରେ ଶବ୍ଦ କରାଯାଏ ସେଇ ଭଳି ଶବ୍ଦ ଭାସି ଆସିଲା । ସେ ଶବ୍ଦସବୁ କ୍ରମଶଃ ପାଖେଇ ଆସୁଥିଲା । ଏ ତିନିଜଣ ହଠାତ୍ ଜାଗ୍ରତ ଏବଂ ସଚେତନ ହୋଇ ଉଠିଲେ । ଭୟ ଏବଂ ଆତଙ୍କରେ ଏମାନେ ବିବ୍ରତ ହୋଇ ପଡ଼ିଲେ ।

ବିଦ୍ୟାଧର ॥ ହେଇ, ରଜାଘର ଆମକୁ ଖୋଜିବା ପାଇଁ ପୁଣି ଲୋକ ପଠେଇଛନ୍ତି—

ଧୁରନ୍ଧର ॥ ଆମକୁ ଲୁଚି ଯିବାକୁ ହବ ।

ବିଶାଳବାହୁ ॥ ଚାଲ, ଗୁମ୍ଫା ଭିତରକୁ ଚାଲ ।

ଡର ଡର ହୋଇ ସେମାନେ ଭିତରକୁ ପଶିବାକୁ ଏକାବେଳକେ ଚେଷ୍ଟାକରି ବିଫଳ ହେଲେ । ତା'ପରେ ଆସ୍ତେ ଆସ୍ତେ, ଜଣକ ପରେ ଜଣେ ଭିତରକୁ ଗଲେ । କୋଳାହଳ ଏବଂ ଶବ୍ଦସବୁ କ୍ରମଶଃ ନିକଟେଇ ଆସି ପୁଣି ଦୂରକୁ ଚାଲିଗଲା, ଏବଂ ଆସ୍ତେ ଆସ୍ତେ ଶବ୍ଦ ସବୁ ଆଉ ଶୁଭିଲା ନାହିଁ । ମଞ୍ଚ ଅନ୍ଧକାର ହେଲା ।

ହେଲା ଦୁ'ଘଣ୍ଟା ହେବ । ଦିନର କଅଁଳ ଖରା ଚାରିଆଡ଼େ ବିସ୍ତୃତ ହୋଇ ପଡ଼ିଛି । ରାଜଧାନୀର ପ୍ରଶସ୍ତ ସଡ଼କ ଉପରେ କେତେଗୁଡ଼ାଏ ବିଚିତ୍ର ମଣିଷ ଚାଲବୁଲ ହେଉଛନ୍ତି । ଏମାନଙ୍କୁ ମଣିଷ କହିଲେ ହୁଏତ ଭୁଲ ହେବ । କାରଣ ଦେହଟା ମଣିଷର ହେଲେ ବି ମୁହଁଟା ଓଟ ପରି । ସମସ୍ତଙ୍କ ପିଠିରେ ଗୋଟାଏ ଗୋଟାଏ କୁଜ । କିନ୍ତୁ ସେମାନେ ଚାରିଗୋଡ଼ରେ ଚାଲୁନାହାନ୍ତି । ମଣିଷଙ୍କ ପରି ଦୁଇଗୋଡ଼ରେ ଚାଲୁଛନ୍ତି । ହାତ, ହାତର କାମ କରୁଛି । ସେମାନଙ୍କର ଲାଞ୍ଜ ବି ନାହିଁ । ସେମାନେ ବିଭିନ୍ନ କାର୍ଯ୍ୟ ଉପଲକ୍ଷ୍ୟରେ କିଏ ଦୌଡ଼ୁଛି, କିଏ ବା ଧୀରେ ଧୀରେ ଚାଲୁଛି । କିଏ ପରସ୍ପର ଭିତରେ କଥାବାର୍ତ୍ତା ହୋଇ ରାସ୍ତା ଅତିକ୍ରମ କରୁଛନ୍ତି ।

ଏହି ସମୟରେ ଦେବୀର ହାତ ଧରି ନିରଂଜନ ଆସି ପହଞ୍ଚିଲା । ବହୁତ ରାସ୍ତା ଚାଲିବାରେ ସେ କ୍ଳାନ୍ତ । କିନ୍ତୁ ଦେବୀ ସେଇ ପୂର୍ବଭଳି । କ୍ଳାନ୍ତ ନାହିଁ, ଅବସନ୍ନତା ନାହିଁ କିମ୍ବା ଫୁର୍ତ୍ତି ବି ନାହିଁ । ସେ ଆସି ଗୋଟାଏ ଛକ ଜାଗାରେ ଠିଆ ହେଲା । ଦେବୀ ବି ଠିଆ ହୋଇ ପଡ଼ିଲା । ସେମିତି ଠିଆ ହୋଇ ସେ କିଛି ସମୟ ଥକା ମାରିଲା । ଏହି ସମୟରେ ଦୁଇ ଚାରିଜଣ ଓଟ ମୁହାଁ ତା' ପାଖ ଦେଇ ଚାଲିଗଲେ । ସେମାନଙ୍କୁ ଦେଖି, ସେ ହଠାତ୍ ଯେପରି ତା' ଖୋଜିଲା ଜିନିଷ ପାଇ ଯାଇଛି ସେଇପରି ଭାବଭଙ୍ଗୀ କଲା । ଖୁବ୍ ଖୁସି ହୋଇ ସେ ଦେବୀକୁ ଅନେଇ କହିଲା,

**ନିରଂଜନ** ॥ ଦେଖିଲୁ, ଆମେ ଆସି ଠିକଣା ଜାଗାରେ ପହଞ୍ଚି ଯାଇଛୁଁ । ହେଇ ଦେଖ୍, ଓଟମୁହାଁ ଲୋକଗୁଡ଼ାକ କେମିତି ଚାଲୁଚାଲୁ

ହୋଇ ବୁଲୁଚନ୍ତି । ସେ ତିନିଜଣ ଏଇ ଓଟମୁହାଁ ଲୋକ-
ଗୁଡ଼ାକ କଥା କହୁଥିଲେ । ରହ, ମୁଁ ସେମାନଙ୍କୁ ଡାକୁଛି ।

ସେ ଟିକିଏ ଅଗେଇ ଗଲା । ଘୁରିଅଡ଼କୁ ଅନେଇଲା,
ଏ ପାଖ ସେ ପାଖ ଦେଖିଲା । ରାସ୍ତାର ଏ ମୁଣ୍ଡରୁ ସେ
ମୁଣ୍ଡକୁ ଚାଲବୁଲ କରି ଲୋକମାନଙ୍କର ଯିବା ଆସିବାକୁ
ଠଉରେଇଲା, ତା'ପରେ ଡାକ ଛାଡ଼ିଲା—

ନିରଂଜନ ॥ ଭାଇମାନେ, ଦେଖ, ମୁଁ ଆସିଚି । ମୋ' ମୁହଁ କେମିତି
ବଦଳି ଯାଇଚି ଦେଖ ! ମୋ' ପାଖକୁ ଆସ । ମୁଁ ତୁମ ମୁହଁ
ବଦଳେଇ ଦେବି । ଆସ, ଆସ ଭାଇମାନେ ।

ତା'ର ଡାକ ଶୁଣି ହଠାତ କିଛି ଲୋକ ଆସି ଜମା
ହେଲେ । ନିରଂଜନ ଆଶାସ୍ୱୀ ହୋଇ ସମସ୍ତଙ୍କୁ ନିଜ
ମୁହଁ ଦେଖାଇବାର ଅଭିନୟ କଲା । କିନ୍ତୁ ହଠାତ୍
ଭୟପାଇ ଯାଇଥିବା ଭଳି ଏଇ ଓଟ ମୁହାଁ ଲୋକଗୁଡ଼ିକ
ନିରଂଜନ ଆଡୁ ଦେଖିକୁ ଛାଡ଼ି ଦୌଡ଼ିବାକୁ ଲାଗିଲେ ।
ନିରଂଜନ ଆଶ୍ଚର୍ଯ୍ୟ ହୋଇଗଲା ।

ନିରଂଜନ ॥ ଆରେ ଇଏ କ'ଣ ! ମୋତେ ଦେଖି ଏମାନେ ପଳଉଚନ୍ତି
କାହିଁକି ?

କିଛି ସମୟ ସେ ଏମାନଙ୍କ ପଛରେ ଅନୁଧାବନ କଲା,
ପାଖକୁ ଡାକିବାକୁ ଚେଷ୍ଟା କଲା, କିନ୍ତୁ ତା' ଡାକ
କେହି ଶୁଣୁ ନ ଥିଲେ, ସେମିତି ଦୌଡ଼ିବାରେ
ଲାଗିଥିଲେ ।

ନିରଂଜନ ॥ ଶୁଣ, ଶୁଣ ଭାଇମାନେ ! ପଳାଅନି ! ମୁଁ ତୁମକୁ ଭଲ
କରିଦେବି । ସାଙ୍ଗରେ ଦେଖିକୁ ଆଣିଚି । ତମ ଭଲ ହବାର
ଔଷଧ ।

ଏମିତି ଡାକୁ ଡାକୁ ସେ ହତାଶ ହୋଇ ପଡ଼ିଲା ।
ସେ ଦେଖୁଥିଲା, ସେମାନେ ଦୌଡ଼ି ଦୌଡ଼ି ଘର

ଭିତରେ ପଶି ଯାଉଛନ୍ତି ଆଉ କବାଟ କିଳି ଦଉଛନ୍ତି । ତା'ର ଏତେ ଆଶା ଏବଂ ବିଶ୍ୱାସ ଯେମିତି ଧୂଳିସାତ୍ ହୋଇଗଲା । ସେ ଏକ ଦୀର୍ଘଶ୍ୱାସ ଛାଡ଼ି ଦେବୀକୁ କହିଲା,

ନିରଂଜନ ॥ ଦେଖିଲୁ ତ ! ସେମାନେ କେମିତି କବାଟ କିଳି ଦେଲେ ! ଏମାନେ ଯଦି ବଦଳିବାକୁ ନ ଚାହାନ୍ତି, ମୁଁ କ'ଣ କରିବି ! ହଁ ତୋତେ କହି ବା ଲାଭ କ'ଣ ! ତୁ'ତ କିଛି କହିବୁନି, ଏଣେ ଏ ଓଟମୁହାଁ ଲୋକଗୁଡ଼ାକ ବି ମୋ' ମୁହଁ ଚାହିଁବେନି । ମୁଁ ଏବେ କୁଆଡ଼େ ଯିବି ? କେତେ ଘୁରିବି ?

ସେ ଇତସ୍ତତଃ କରୁଥିଲା । କ୍ଷଣରେ ସେ ଏ ପାଖ ସେ ପାଖ ଚାହୁଁଥିଲା । ହଠାତ୍ କୌଣସି ଗୋଟିଏ ଦୂରର ବସ୍ତୁ ଦେଖି ପୂର୍ବର ନୈରାଶ୍ୟ ଭାବ ତା'ର କଟିଗଲା । ସେ ଉତ୍‌ଫୁଲ୍ଲ ହୋଇଉଠିଲା । ଏକ ଉଚ୍ଛ୍ୱାସରେ ସେ ଦେବୀକୁ କହିବାରେ ଲାଗିଲା,

ନିରଂଜନ ॥ ହେଇ ଦେଖ, ଦେଖ । ରଜାଘରଟା ଦେଖା ଯାଉଚି । ଚାଲ, ସେଇଠିକି ଯିବା । ଯଦି ସେଠି କିଛି ଘଟିଯାଏ, ତା' ହେଲେ ରାଜ୍ୟସାରା ଘଟିବାକୁ ଡେରି ଲାଗିବନି । ଚାଲିଲୁ ଦେବୀ, ରଜା ଘରକୁ ।

ଦେବୀର ହାତ ଧରି ସେ ପୁଣି ଚାଲିବାକୁ ଲାଗିଲା ଯେମିତି ଜଣା ଯାଉଥିଲା ଆଉ ତା' ଦେହରେ ବା ମନରେ କୌଣସି କ୍ଲାନ୍ତି ନାହିଁ । ଏଥର ଚାଲିବାଟା ତା'ର ଅପେକ୍ଷାକୃତ ଦ୍ରୁତ ।

**ମଞ୍ଚ ପୁଣି ଅନ୍ଧକାର ହେଲା ।**

ଏ ଯାଏଁ ବି ଦରବାର ବସିନି । କିନ୍ତୁ ଆରମ୍ଭ ହେବାର
ସମସ୍ତ ପ୍ରାୟ ହୋଇଯାଇଛି । ରାଜାଙ୍କର ସିଂହାସନ
ପଡ଼ିବା ସ୍ଥାନଟି ଏକ ଉଚ୍ଚ ବେଦୀ । ବେଦୀ ଉପରକୁ
ଉଠିବାକୁ ଚାରିପାଖରୁ ପାହାଚ ପଡ଼ିଛି । କିନ୍ତୁ ବର୍ତ୍ତମାନ
ସେଇ ବେଦୀଟି ମଧ୍ୟ ଶୂନ୍ୟ, ସିଂହାସନ ଆସି ପଡ଼ିନି ।
ଯଦିଓ ଦରବାର ଆରମ୍ଭ ହୋଇନି କିନ୍ତୁ ଆରମ୍ଭ ହେବାର
ତତ୍ପରତା ଦେଖା ଦେଇଛି । ଦୂରରୁ ବିଭିନ୍ନ ପ୍ରକାର
ବାଦ୍ୟ ନାଦ ଶୁଣା ଯାଉଛି । ମନ୍ତ୍ରୀ ଓ ସେନାପତି,
ସେମାନେ ମଧ୍ୟ ଓଟ ମୁହାଁ, ସେମାନେ ପ୍ରଥମେ
ଦରବାର ଭିତରକୁ ପଶି ଆସିଲେ । ବେଦୀ ର
ଚତୁର୍ଦ୍ଦିଗରେ ଘୂରି ଘୂରି ପର୍ଯ୍ୟବେକ୍ଷଣ କରୁଁ କରୁଁ
ହଠାତ୍ ବେଦୀ ସମ୍ମୁଖରେ ପରସ୍ପରର ମୁହାଁ ମୁହିଁ
ହେଲେ । ସେମାନେ ଦୁଇ ବିପରୀତ ଦିଗରୁ ଦରବାର
ଭିତରକୁ ଆସିଥିଲେ । ମୁହାଁ ମୁହିଁ ହୋଇଗଲା ସାଙ୍ଗେ
ସାଙ୍ଗେ, ମୁଖସ୍ଥ କରି ଆସିଥିବା ଭଳି ରାଜାଙ୍କ ପ୍ରଶସ୍ତି
ଗାନ କରିବାକୁ ଲାଗିଲେ, ଖୁବ ଉଚ୍ଚ ଗଳାରେ ।

ମନ୍ତ୍ରୀ ॥ ମହା ମହିମ, ଓଟମୁହାଁମାନଙ୍କର ଅଧିପତି ରାଜା ସୁରେନ୍ଦ୍ର
ପ୍ରତାପ ଦୀର୍ଘଜୀବି ହୁଅନ୍ତୁ ।

ସେନାପତି ॥ ଓଟମୁହାଁ ମାନଙ୍କର ଏକମାତ୍ର ପ୍ରଭୁ ମହାରାଜ ସୁରେନ୍ଦ୍ର
ପ୍ରତାପଙ୍କର ଜୟ ହେଉ ।

ଏଇ ପ୍ରଶସ୍ତି ଗାନ ପରେ ସେମାନେ ପୁଣି ପରସ୍ପର
ଆଡ଼କୁ ଚୂଲି ଅନେଇଲେ । କାରଣ ତା' ପୂର୍ବରୁ
ସେମାନେ ସମ୍ମୁଖକୁ ମୁହଁ କରି, ଉର୍ଦ୍ଧ୍ୱବାହୁ ହୋଇ

ରାଜାଙ୍କ ପ୍ରଶସ୍ତି ଗାନ କରୁଥିଲେ । ଏଥର ଆରମ୍ଭ ହେଲ ପରସ୍ପରରେ କୁଶଳ ଜିଜ୍ଞାସାର ପାଲ । ମନ୍ତ୍ରୀ ଓ ସେନାପତିଙ୍କ ମଧ୍ୟରେ ଏକ ପ୍ରଚ୍ଛନ୍ନ ପ୍ରତିଯୋଗିତା ଅଛି । ସେଇଟି ହେଉଛି, କିଏ ବେଶୀ ରାଜାଙ୍କର ନିକଟତର ହୋଇ ପାରିବ । ତେଣୁ ସେମାନଙ୍କର କୁଶଳ ଜିଜ୍ଞାସା ରାଜାଙ୍କର ପ୍ରଶଂସାକୁ ପରିବର୍ତ୍ତିତ ହେଲ ।

ମନ୍ତ୍ରୀ ॥ ସେନାପତି, ଆମେ ଭାଗ୍ୟବାନ୍ ।

ସେନାପତି ॥ କାରଣ, ରାଜାଙ୍କ ଅପାର କରୁଣାରୁ ଆମେ ଓଟମୁହାଁ ।

ମନ୍ତ୍ରୀ ॥ ରାଜାଙ୍କର ଅନୁକମ୍ପାର ଚିହ୍ନସ୍ୱରୂପ ମେ ଓଟମୁହାଁ ।

ସେନାପତି ॥ ଏବଂ ଓଟମୁହାଁମାନେ ସମଗ୍ର ସୃଷ୍ଟିରେ ସବୁଠାରୁ ଧନ୍ୟ

ମନ୍ତ୍ରୀ ॥ ଏବଂ ଓଟମୁହାଁମାନେ ସମଗ୍ର ସୃଷ୍ଟିରେ ସବୁଠାରୁ ଭାଗ୍ୟବାନ୍

ସେନାପତି ॥ ଏବଂ ତାହା ମଧ୍ୟ କେବଳ ଆମ ମହାମହିମ ରାଜାଙ୍କପାଇଁ ସମ୍ଭବ ହୋଇ ପାରିଛି ।

ମନ୍ତ୍ରୀ ॥ ଏବଂ ଆମ ରାଜା ଦୟାର ସାଗର, ତେଣୁ ମୁଁ ମନ୍ତ୍ରୀ ।

ସେନାପତି ॥ ଏବଂ ଆମ ରାଜା ଅନୁକମ୍ପାର ଅବତାର, ତେଣୁ ମୁଁ ସେନାପତି ।

ଏହି ସମୟରେ ତୂର୍ଯ୍ୟନାଦ ହେଲ । ଶିଙ୍ଗା କାହାଳୀ, ଭେରୀ ତୂରୀ ମହୁରୀ ଏବଂ ଘୋଡ଼ା ନାଗରା ବାଜି ଉଠିଲା । ତାହା ରାଜାଙ୍କର ଦରବାରକୁ ଆଗମନର ସଂକେତ । ଅନ୍ତରାଳରୁ ଘୋଷକ ଉଚ୍ଚ ସ୍ୱରରେ ଘୋଷଣା କଲ—

ଘୋଷଣା ॥ ମହାମହିମ, ପ୍ରଜାବତ୍ସଳ, ଓଟମୁହାଁମାନଙ୍କର ଅଧିପତି, ପରମ କାରୁଣିକ, ରାଜାଧିରାଜ ନରେନ୍ଦ୍ର ପ୍ରତାପ ମାନଧାତାଙ୍କର ଦରବାରକୁ ବିଜେ ।

ଘୋଷଣା ଶେଷ ହେବା ସଙ୍ଗେ ସଙ୍ଗେ ମନ୍ତ୍ରୀ ଓ ସେନାପତି ବେଦୀ ଆଡ଼କୁ ଚାଲିବାକୁ ଲଗିଲେ । ସାଧବ

ଏବଂ କଟୁଆଳ ମଧ୍ୟ ଅନ୍ତରାଳରୁ ବାହାରି ଆସି ମନ୍ତ୍ରୀ ଓ ସେନାପତିଙ୍କୁ ଅନୁସରଣ କଲେ । ବର୍ତ୍ତମାନ ମନ୍ତ୍ରୀଙ୍କ ପଛରେ କଟୁଆଳ ଓ ସେନାପତିଙ୍କ ପଛରେ ମାଧବ, ଦୁଇ ଧାଡ଼ିରେ ବିଭକ୍ତ ହୋଇ ବେଦୀ ପାଖକୁ ଚଲେ । ବେଦୀ ତଳେ ଠିଆ ହୋଇ, ମୁଣ୍ଡ ଝୁଙ୍କେଇ ହାତ ପ୍ରସାରିତ କରି, ରାଜାଙ୍କୁ ସ୍ୱାଗତ କରିବା ଭଙ୍ଗୀରେ ଠିଆ ହୋଇ ରହିଲେ । ବର୍ତ୍ତମାନ ମହାରାଜା ସୁରେନ୍ଦ୍ର ପ୍ରତାପ ଦରବାରକୁ ବିଜେ କଲେ । ସେ କିନ୍ତୁ ଓଟ ମୁହାଁ ନୁହନ୍ତି । ତାଙ୍କ ଆଗରେ ପଛରେ ଦୁଇ ଦେହରକ୍ଷୀ ହାତରେ ବର୍ଚ୍ଛା ଧରି ତାଙ୍କୁ ଅନୁସରଣ କରୁଥିଲେ । ରାଜା ହାତରେ ଫୁଲ ଧରିଥିଲେ ଏବଂ ବାରମ୍ବାର ଶୁଙ୍ଘୁଥିଲେ । ସେ ଆସି ସ୍ୱାଗତ କରିବା ଭଙ୍ଗୀରେ ଠିଆ ହୋଇଥିବା ମନ୍ତ୍ରୀ ସେନାପତି ମାଧବ ଓ କଟୁଆଳଙ୍କୁ ପର୍ଯ୍ୟବେକ୍ଷଣ କଲେ । ସେମାନେ ଅଳ୍ପ ନୋଇଁ ପଡ଼ିଲେ । କଟୁଆଳ ହୁଏତ ଭୁଲରେ ଧାଡ଼ିରେ ଠିଆ ନ ହୋଇ ଟିକିଏ ଧାଡ଼ି ଛାଡ଼ି ଠିଆ ହୋଇଥିଲା । ରାଜାଙ୍କ ଦୃଷ୍ଟି ପଡ଼ିଗଲା, ସେ ବିରକ୍ତ ହେଲେ ମନେ ମନେ ଏବଂ ତାକୁ ଠିକ ଜାଗାରେ ଟାଣି ନେଇ ଠିଆ କରେଇ ଦେଲେ । ତା'ପରେ ଦେଖିଲେ ସବୁ ଠିକ୍ ଅଛି, ସେ ତେଣୁ ବେଦୀ ଉପରକୁ ଉଠିଗଲେ । ତା'ପରେ ଆଦେଶ କଲେ,

ରାଜା ॥ ଜାତୀୟ ସଂଗୀତ !

ଠିଆ ହୋଇଥିବା ପାଞ୍ଚ ମନ୍ତ୍ରୀଗଣ ହଠାତ୍ ଉଣ୍ଣେଇ ପଡ଼ି ଜାତୀୟ ସଂଗୀତ ବୋଲିବାକୁ ଆରମ୍ଭ କଲେ । ପ୍ରଥମେ ମନ୍ତ୍ରୀ ବୋଲନ୍ତି, ଏବଂ ପରେ ଅନ୍ୟମାନେ ସେଇ ପଙ୍କ୍ତିକୁ ପୁନରାବୃତ୍ତି କରୁଥାନ୍ତି ।

ଜାତୀୟ ସଂଗୀତ

ଓଟ ପରି ଜୀବ ନାହିଁରେ ଭାଇ
ଶାନ୍ତ ଭୁ ପାଇବୁ ଯା' ଓଟ ହୋଇ

ପିଠିରେ ଝୁଲନ୍ତା କି ମନୋହର
ତୋ ନିଶାଢ଼ ଆଖି ଭାରି ସୁନ୍ଦର
ଜଣ୍ଡା ଲଣ୍ଡା ସିଝୁ ଯା' ଖାଇଯା'
ଚାନ୍ଦଲ ବାଲିରେ ଯା ଶୋଇଯା' ।
ଓଃ ମରି ଗୋବ ନାହିଁରେ ଭାଇ
କହେ ରାଜା ଶୁର ଯା' ଓଃ ହୋଇ ।

ଜାତୀୟ ସଂଗୀତ ବୋଲା ସରିଲ । ସମସ୍ତେ ଠାକୁରଙ୍କୁ ପ୍ରଣାମ କଲା ପରି ଭୂଇଁରେ ମୁଣ୍ଡ ଲଗେଇ ପ୍ରଣାମ କଲେ । ରାଜା ବରାଭୟ ମୁଦ୍ରାରେ ହାତ ଟେକି ଦେଲେ । ସମସ୍ତେ ଝାଡ଼ି ଝୁଡ଼ି ହୋଇ ଉଠି ଠିଆ ହେଲେ । ଏଣେ ରାଜା ବସିବାକୁ ଗଲାବେଳକୁ ଜାଣି ପାରିଲେ ତାଙ୍କ ପଛରେ ସିଂହାସନ ନାହିଁ । ତେଣୁ ସେ ବିରକ୍ତ ହୋଇ ପାଟି କରି ଉଠିଲେ —

ରାଜା ॥ ମୋ' ସିଂହାସନ ?

ପାତ୍ର ମନ୍ତ୍ରୀଗଣ ଭୟରେ ଛାନିଆଁ ହୋଇଗଲେ, ସେନାପତି ପଚାରିଲେ ମନ୍ତ୍ରୀଙ୍କୁ, ମନ୍ତ୍ରୀ କୋଟୁଆଳଙ୍କୁ, କୋଟୁଆଳ ସାଧବକୁ ଏବଂ ସାଧବ ପାଖରେ ଥିବା ପ୍ରହରୀଙ୍କୁ ପଚାରିଲେ । ପ୍ରହରୀ ବିଚରା ଆଉ କିଛି ବାଟ ନ ପାଇ ଦୌଡ଼ିଗଲା ଅନ୍ୟ ପ୍ରହରୀ ପାଖକୁ । ଅନ୍ୟ ପ୍ରହରୀ କାନରେ କହିଲା ଏବଂ ଦୁଇଜଣ ଯାକ ବାହାରିଗଲେ ଦ୍ରୁତଗତିରେ ।

ସେନାପତି ॥ ( ମନ୍ତ୍ରୀଙ୍କୁ ) ରାମୁଁଙ୍କ ସିଂହାସନ ?

ମନ୍ତ୍ରୀ ॥ ( କୋଟୁଆଳଙ୍କୁ ) ସିଂହାସନ ?

କୋଟୁଆଳ ॥ ( ସାଧବକୁ ) ସିଂହା···

ସାଧବ ॥ ( ପ୍ରହରୀକୁ ) ସନ ?

ପ୍ରହରୀ ॥ ( ଅନ୍ୟ ପ୍ରହରୀକୁ ) ରାମୁଁଙ୍କ ସିଂହାସନ !

ପ୍ରହସ୍ତ ଦୁଇଜଣ ବାହାଣ ଗଲ ପରେ ରାଜା ସୁରେନ୍ଦ୍ର ପ୍ରତାପ ପୁଣି ତାଙ୍କର କର୍ମଚାରୀମାନଙ୍କୁ ପର୍ଯ୍ୟବେକ୍ଷଣ କଲେ । କିନ୍ତୁ ପୂର୍ବର ବରନ୍ତ ତାଙ୍କର ବର୍ତ୍ତମାନ ଆଉ ନାହିଁ । ସେ ମନ୍ତ୍ରୀଙ୍କୁ ଅନାଇ ପ୍ରଶ୍ନ କଲେ—

ରାଜା ॥ ମୋ'ର ସୁନ୍ଦର ଓଡ଼ ମୁହାଁ ମାନେ ?

ମନ୍ତ୍ରୀ ॥ ସେମାନେ ଆହୁରି ସୁନ୍ଦର ଦେଖା ଯାଉଛନ୍ତି ହୁଜୁର !

ରାଜା ॥ ମୁଁ ଖବର ପାଇଚି ନିଜକୁ ବଡ଼ ଆଜ୍ଞା ଜ୍ଞାନୀ ବୋଲାଉଥିବା ସେଇ ତିନିଜଣ ପୁଣି ରାଜ୍ୟରୁ ଜଣକୁ ଧରି ନେଇ ଯାଇଛନ୍ତି ମଣିଷ ମୁଣ୍ଡିଆ କରିବା ପାଇଁ ?

ମନ୍ତ୍ରୀ ଅସହାୟ ଭାବରେ ରାଜାଙ୍କୁ ଅନେଇଲେ, କାରଣ ତାଙ୍କ ହାତରେ ସେପରି କୌଣସି ସମ୍ବାଦ ନଥିଲା । ତା'ପରେ ହଠାତ୍ କ'ଣ କହିବେ ମନେ ପଡ଼ିଗଲା, ସେ ଝଟ କେ ତ ଉତ୍ତର ଦେଲେ ଏବଂ ଅନ୍ୟ-ମାନଙ୍କୁ ଇଙ୍ଗିତ ଦେଲେ ତାଙ୍କ ସାଙ୍ଗରେ ସ୍ୱର ମିଳେଇବାକୁ ।

ମନ୍ତ୍ରୀ ॥ ଗୁଜବ ! ଗୁଜବ !

ସମସ୍ତେ ॥ ଗୁଜବ ! ଗୁଜବ !

ସେନାପତି ॥ ଗୁଜବରେ କାନ ଦେବେନି ହଜୁର !

ରାଜା ବୋଧହୁଏ ସନ୍ତୁଷ୍ଟ ହୋଇ ପାରିଲେନି । ତେଣୁ ସେ କଣ୍ଟୁଆଲକୁ ଅନେଇ ତାକୁ ପ୍ରଶ୍ନ କଲେ ।

ରାଜା ॥ କଣ୍ଟୁଆଲ !

କଣ୍ଟୁଆଲ ॥ ହୁଜୁର !

ରାଜା ॥ ଏଇ ଗୁଜବ ?

କଣ୍ଟୁଆଲ କ'ଣ ଉତ୍ତର ଦେବ ବୁଝି ପାରୁ ନଥିଲା, ସେ ଅସହାୟ ଭାବରେ ମନ୍ତ୍ରୀଙ୍କୁ ଅନେଇଲା । ମନ୍ତ୍ରୀ ତାକୁ

ଇଙ୍ଗିତରେ 'ଗୁଜବ' ବୋଲି କହିବାକୁ ନିର୍ଦ୍ଦେଶ ଦେଲେ । ସେ ଅନୁନୟ ଭଙ୍ଗୀରେ ହାତଯୋଡ଼ି ରାଜାଙ୍କୁ ଜଣା କରାଇଲା,

କଟୁଆଳ ॥ ଗୁଜବ ହୁମୁଁ ।

ରାଜା ॥ ଆଉ କେହି ଯାଇନି ?

କଟୁଆଳ ॥ ନାଁ, ହୁମୁଁ !

ରାଜା ॥ ଆଉ କେହି ଆସିବନି ?

କଟୁଆଳ ॥ ନାଁ ହୁମୁଁ ।

ରାଜା ॥ ଆନନ୍ଦରେ ହର୍ଷଧ୍ୱନି କର !

ଆଦେଶ ପାଇଲା ମାତ୍ରେ ସମସ୍ତେ ଏକ ସ୍ୱରରେ ସମ୍ମିଳିତ ଭାବରେ ହସିବାକୁ ଲାଗିଲେ । ପ୍ରଥମ ମୃଦୁ କଣ୍ଠରେ ତା'ପରେ ରାଜାଙ୍କୁ ଖୁସି କରିବାକୁ ଜୋର୍‌ରେ ଏବଂ ଆତ୍ମ ଖୁସି କରିବାକୁ ଅଧିକ ଜୋର୍‌ରେ ହସି ଉଠିଲେ । ରାଜା ଏମାନଙ୍କ ହସରେ ଆମୋଦିତ ଏବଂ ଅଭିଭୂତ ହେଉଥିଲେ ବେଳେ ହଠାତ୍ ମନେ ପଡ଼ିଲା ସିଂହାସନ ଏ ପର୍ଯ୍ୟନ୍ତ ଆସିନାହିଁ ଓ ସେ ତଥାପି ଠିଆ ହୋଇଛନ୍ତି । ସେ ବିରକ୍ତ ହୋଇ ଉଠିଲେ ଏବଂ ହାତ ଉଠେଇଲେ,

ରାଜା ॥ ବନ୍ଦକର !

ହସ ବନ୍ଦ ହୋଇଗଲା । ଏକା ବେଳକେ, ଏକ ସମୟରେ ହଠାତ୍ । କିନ୍ତୁ ଶବ୍ଦ ନ ଥିଲେ ବି ପାଟି ଗୁଡ଼ାକ ଖୋଲା ରହିଲା କିଛି ସମୟ । ତା'ପରେ ଆସ୍ତେ ଆସ୍ତେ ବନ୍ଦ ହୋଇଗଲା । ରାଜାଙ୍କର ଗମ୍ଭୀର ମୂର୍ତ୍ତି ଦେଖି, ପାତ୍ର ମନ୍ତ୍ରୀମାନେ ବ୍ୟାକୁଳ ଏବଂ ସନ୍ତ୍ରସ୍ତ ହୋଇ ଉଠିଲେ ।

ରାଜା ॥ ମୋ' ସିଂହାସନ ?

ମନ୍ତ୍ରୀ ॥ ( ସେନାପତିଙ୍କୁ ) ଗ୍ରମୁଁଙ୍କ ସିଂହାସନ ?

ସେନାପତି ॥ ( ସାଧବକୁ ) ସିଂହାସନ ?

ସାଧବ ॥ ( କଟୁଆଳକୁ ) ସିଂହା···

କଟୁଆଳ ॥ ସନ ?

କଟୁଆଳ ପ୍ରହରୀକୁ କହିବା ପାଇଁ ଗ୍ଭହୁଁଥିଲ କଥାଟା । କିନ୍ତୁ ଯେତେବେଳେ ଦେଖିଲ ପ୍ରହରୀ ତା' ସ୍ଥାନରେ ନାହିଁ, ତାହାକୁ କହିବ ବୋଲି ଠିକ୍ କରି ନପାରି ଅନ୍ତରାଳକୁ ଲକ୍ଷ୍ୟ କରି, ଉଦ୍ଦେଶ୍ୟହୀନ ଭାବରେ ଚିତ୍କାର କରି ଉଠିଲ ( ସନ ) । ଏବଂ ଠିକ୍ ସେଇ ସମୟରେ ସିଂହାସନ ଓ ରାଣୀଙ୍କ ଆସନ ଧରି ପ୍ରହରୀ ଦୁଇଜଣ ପ୍ରବେଶ କଲେ । ସିଂହାସନ ଏକ ଅଦ୍ଭୁତ ପ୍ରକାର ସିଂହାସନ । ତା'ର ଗୋଟିଏ ଗୋଡ଼ ଅନ୍ୟ ଗୋଡ଼ ମାନଙ୍କଠାରୁ ଖ୍ରୋଟ । ତେଣୁ ସେ ସବୁବେଳେ ଟଳମଳ କରେ । ତେଣୁ ତାକୁ ଠିକ କରିବାପାଇଁ ଖଣ୍ଡେ ଖ୍ରୋଟ ପଟା ତା' ତଳେ ଦିଆଯାଏ । ସେଇ ଖ୍ରୋଟ ପଟା ଖଣ୍ଡିକ ମଧ୍ୟ ସବୁବେଳେ ସିଂହାସନ ପାଖରେ ଥାଏ । ପ୍ରହରୀ ଦୁଇଜଣ ବେଦୀ ଉପରକୁ ଉଠି ସିଂହାସନ ଓ ରାଣୀଙ୍କ ଆସନଟି ଲଗାଲଗି କରି ରଖି ଦେଲେ । କିନ୍ତୁ ପଟା ଖଣ୍ଡିକ ଲଗେଇବାକୁ ଭୁଲି ଯାଇ ନିଜ ସ୍ଥାନକୁ ଫେରି ଆସିଲେ । ରାଜା ସିଂହାସନଟିକୁ ଦେଖି ଆଶ୍ୱସ୍ତ ହେଲେ ଏବଂ ଗମ୍ଭୀର ଆତ୍ମତୃପ୍ତିରେ ସିଂହାସନ ଉପରେ ବସିଲେ । କିନ୍ତୁ ସେଇ ମୁହୂର୍ତ୍ତରେ ସିଂହାସନ ଟଳମଳ ହେଲ । ରାଜା ବ୍ରେକ୍ତ ହୋଇ ପଡ଼ିଲେ, ଏବଂ ଠିଆ ହୋଇ ପଡ଼ିଲେ ।

ରାଜା ॥ ଆଃ, ପୁଣି ସେଇ ଟଳମଳ !

ଶଙ୍କିତ ମନ୍ତ୍ରୀ ଏବଂ ସେନାପତି କୁଦା ମାରି ବେଦୀ ଉପରକୁ ଉଠି ଗଲେ । ସିଂହାସନଟିକୁ ଜାବୁଡ଼ି ଧରି

ସ୍କ୍ରୁଟ ପଟା ଗର୍ତ୍ତକୁ ଖୋଜିବାକୁ ଲାଗିଲେ । ମନ୍ତ୍ରୀ ପଟାଟି ପାଇଗଲେ ।

ମନ୍ତ୍ରୀ ।। ହୁମୁଁ !

ରାଜା ।। ସବୁବେଳେ ସିଂହାସନ କାହିଁକି ଟଳମଳ ?

ସେନାପତି ।। ଆଜ୍ଞା ହବନି ହୁମୁଁ, ଆମେ ଜୋର୍ କରି ଧରିଛୁଁ ।

ମନ୍ତ୍ରୀ ।। ତଳେ ଠେକା ଦେଇ ଦେଇଛୁଁ ହୁମୁଁ !

ରାଜା ।। କିନ୍ତୁ ବାରମ୍ବାର ଟଳମଳ କରୁଚି କାହିଁକି ?

ମନ୍ତ୍ରୀ ।। ବଢ଼ିଆ କାରିଗର ଆଣି ମରାମତି କରି ସାରିଲୁଣି ହୁମୁଁ, ତେବେ ବି ସିଂହାସନଟା ସ୍ଥିର ରହୁନି ।

ସେନାପତି ।। ବୋଧହୁଏ ସିଂହାସନ ସବୁ ଏମିତି ଟଳମଳ କରେ ହୁମୁଁ । ଉପବେଶନ କରିବା ହୁଅନ୍ତୁ ।

ମନ୍ତ୍ରୀ ।। ଆଉ ଭୟ ନାହିଁ । ତଳେ ଠେକା ଲଗେଇ ସାରିଚୁଁ ।

ସଂଦେହଭରା ଆଖିରେ ରାଜା, ମନ୍ତ୍ରୀ ଓ ସେନାପତିଙ୍କୁ ଅନେଇଲେ । ତା'ପରେ ଆସ୍ତେ ଆସ୍ତେ ସିଂହାସନରେ ବସିଲେ । ବସି ବସି ସିଂହାସନଟିକୁ ହଲେଇ ପରୀକ୍ଷା କଲେ । ତା'ପରେ ନିଶ୍ଚିନ୍ତ ହୋଇ ଆରାମରେ ବସିଲେ । ମନ୍ତ୍ରୀ ଓ ସେନାପତି ସ୍ୱସ୍ତିରେ ନିଃଶ୍ୱାସ ମାରି, ସିଂହାସନରୁ ହାତ ଛାଡ଼ି ଦେଇ ପାଖରେ ଠିଆ ହେଲେ । ରାଜା ଧରିଥିବା ଫୁଲଟିକୁ ଥରେ ଜୋର୍‌ରେ ଶୁଙ୍ଘି କହିଲେ,

ରାଜା ।। ଆଃ, ସିଂହାସନ !

ସମସ୍ତେ ।। ହୁମୁଁଙ୍କ ସିଂହାସନ

ରାଜା ।। ଭରି ଆରାମ୍

ସମସ୍ତେ ।। ଭରି ଆରାମ୍ ।

ରାଜା ।। ପ୍ରଜାମାନେ ସବୁଦିନପାଇଁ ଓଟମୁହାଁ ହୋଇ ରହିବେ ।

ମନ୍ତ୍ରୀ ॥ ଓଟମୁହାଁ ହବା ଭଲ, ଭାଗ ଭଲ ।

ସେନାପତି ॥ ଓଟମୁହାଁ ମାନେ ଭାଗ୍ୟବାନ୍

କଟୁଆଳ ॥ ସେମାନେ ଶାନ୍ତଶିଷ୍ଟ, କେବେ ନିୟମ ଲଙ୍ଘନ କରନ୍ତି ନାହିଁ ।

ସାଧବ ॥ କୌଣସି ପ୍ରତିବାଦ କରନ୍ତି ନାହିଁ ।

ମନ୍ତ୍ରୀ ॥ ଆମେ ସମସ୍ତେ ଓଟମୁହାଁ,

ସମସ୍ତେ ॥ ଆମେ ସମସ୍ତେ ଭାଗ୍ୟବାନ୍ ।

ସେନାପତି ॥ ଆମର ପ୍ରଭୁ ରାଜା ସୁନ୍ଦରଚନ୍ଦ୍ର ପ୍ରତାପ ଦୀର୍ଘଜୀବୀ ହୁଅନ୍ତୁ ।

ସମସ୍ତେ ॥ ଦୀର୍ଘଜୀବୀ ହୁଅନ୍ତୁ ।

ରାଜାଙ୍କର ହଠାତ୍ ମନେ ପଡ଼ିଗଲା, ରାଣୀ ଆସି ନାହାନ୍ତି । ସେ ତାଙ୍କ ଶୂନ୍ୟ ଆସନଟିକୁ ଦେଖିଲେ ଏବଂ ପୁଣି ଚଞ୍ଚଳ ଦୃଷ୍ଟି ତାଙ୍କର କର୍ମଚାରୀଙ୍କ ଆଡ଼େ ବୁଲେଇ ଆଣି ପାଟିକରି ଉଠିଲେ,

ରାଜା ॥ ରାଣୀ, ରାଣୀ ଦରବାରକୁ ଆସିନାହାନ୍ତି ?

ସେନାପତି ॥ ( ମନ୍ତ୍ରୀଙ୍କୁ ) ମହାରାଣୀ ?

ମନ୍ତ୍ରୀ ॥ ( କଟୁଆଳକୁ ) ମହାରାଣୀ ?

କଟୁଆଳ ॥ ( ସାଧବକୁ ) ମହା···

ସାଧବ ॥ ( ପ୍ରହରୀକୁ ) ରାଣୀ ?

ପ୍ରହରୀ ॥ ( ଦୌଡ଼ିଯାଇ ଅନ୍ୟ ପ୍ରହରୀ ପାଖରେ ) ମହାରାଣୀ !

ସେ ଦୁଇଜଣ ପୁଣି ନିସ୍ତବ୍ଧ ହେଲେ । ରାଜା ମହାରାଣୀ ପ୍ରସଙ୍ଗରୁ ପ୍ରସଙ୍ଗାନ୍ତରକୁ ଚାଲିଗଲେ । ଆଖି ବୁଲେଇ ଆଣୁ ଆଣୁ ତାଙ୍କର ଦୃଷ୍ଟି କଟୁଆଳ ପାଖରେ ନିବଦ୍ଧ ହେଲା ।

ରାଜା ॥ କଟୁଆଳ !

କଟୁଆଳ ॥ ହୁମୁଁ !

ରାଜା ॥ ସେମାନଙ୍କ ଖବର ?

କଣ୍ଟୁଆଳ ॥ ( କିଛି ବୁଝି ନ ପାରି ମନ୍ତ୍ରୀଙ୍କୁ ପଚାରିଲା ) ସେମାନେ ?

ମନ୍ତ୍ରୀ ॥ ( ସେନାପତିଙ୍କୁ ) ସେମାନେ ?

ସେନାପତି ॥ ( ସାଧବକୁ ) ସେମାନେ ?

ସାଧବ ॥ ( ପୁଣି କଣ୍ଟୁଆଳକୁ ) ସେମାନେ ?

କଣ୍ଟୁଆଳ ॥ ( ରାଜାଙ୍କୁ ) ସେମାନେ ମହାରାଜ ?

ରାଜା ॥ ( ରାଗିଯାଇ ) ସେଇ ! ନିଜକୁ ଜ୍ଞାନୀ ଆଉ ପଣ୍ଡିତ ବୋଲୁଥିବା ମଣିଷମୂର୍ତ୍ତି ଆ ସେଇ ତିନିଜଣ !

ମନ୍ତ୍ରୀ ॥ ( ବୁଝି ପାରି ) ଓ ! ସେମାନଙ୍କର ମସ୍ତକର ମୂଲ୍ୟ ଦଶହଜାର ସ୍ୱର୍ଣ୍ଣମୁଦ୍ରା !

ସେନାପତି ॥ ( ବୁଝି ପାରି ) ଜୀବିତ କିମ୍ବା ମୃତ ।

**ମଞ୍ଚ ଅନ୍ଧକାର ହେଲା ।**

ଯେତେବେଳେ ଦରବାରରେ ଏଇ ତିନି ଜଣଙ୍କ ବିଷୟରେ ଚର୍ଚ୍ଚା ଚାଲିଥିଲା, ସେତେବେଳେ ସୁଷମା ଗୃହ ପାଖରେ ଅନ୍ଧାର । ସେଇ ଅନ୍ଧାର ଭିତରେ ଆସ୍ତେ ଆସ୍ତେ ସୁଷମା ଦ୍ୱାର ଦେଇ ତିନୋଟି ମୁଣ୍ଡ ପଦାକୁ ବାହାରି ଆସିଲା । ବିଶାଳବାହୁ, ବିଦ୍ୟାଧର ଏବଂ ଧୁରନ୍ଧରଙ୍କର ତିନୋଟି ବିଷର୍ଣ୍ଣ କ୍ଷିତ ସନ୍ତ୍ରସ୍ତ ମୁହଁ । ସମୁଦାୟ ଦେହଟି ମଧ୍ୟ ସୁଷମାରୁ ବାହାର କରି ଆଣିବାକୁ ସେମାନଙ୍କର ସାହସ ନାହିଁ । କେବଳ ଖାଲି ମୁଣ୍ଡ ତିନୋଟି । କି ଏକ ଦୁରାଶା ନେଇ ସେଇ ମୁଣ୍ଡ ତିନୋଟି ଜାହାକୁ ଯେମିତି ଖୋଜି ବୁଲୁଥିଲା, ଜାହାର ଫେରିବା ବାଟକୁ ନିର୍ନିମେଷ ଆଖିରେ ଅନେଇ ରହିଥିଲା, ଜାହାର ପଦେ କଥା ଶୁଣିବା ପାଇଁ ଅଧୀର ଆଗ୍ରହରେ ଅପେକ୍ଷା କରୁଥିଲା । ସେମାନେ ଏଥର ପରସ୍ପରକୁ ଅନେଇଲେ,

ବିଦ୍ୟାଧର ॥ ନିରଂଜନ ପଦାଂଟ ପାଉଥିବ ।

ବିଶାଳବାହୁ ॥ କେଜାଣି !

ଧୁରନ୍ଧର ॥ କିଏ କହି ପାରିବ, ସେଠି ପଦାଂଟ ସେ ବଦଳି ଯିବ କି ନାହିଁ ?

ବିଦ୍ୟାଧର ॥ ନାଁ, ସାଙ୍ଗରେ ତା'ର ଦେବୀ ଅଛନ୍ତି ।

ବିଶାଳବାହୁ ॥ କିଏ କହି ପାରିବ, ଦେବୀ ଆମର ଆଶା ସବୁ ପୂରଣ କରି ପାରିବେ କି ନାହିଁ ।

ବିଦ୍ୟାଧର ॥ ତଥାପି ବିଶ୍ୱାସ । ଦେବୀ ଆଉ ନିରଂଜନ ଆମର ସର୍ବଶେଷ ଭରସା ।

ଧୂରନ୍ଧର ॥ ନିରଂଜନ ଅନ୍ୟମାନଙ୍କ ଠାରୁ ଭିନ୍ନ ।

ବିଦ୍ୟାଧର ॥ ବିଶ୍ୱାସ ।

ବିଶାଳବାହୁ ॥ ଦେଖ୍ବା ଆମର ସମସ୍ତ ଆଶା ପୂରଣ କରିବ ।

ବିଦ୍ୟାଧର ॥ ଆଶା !

ଧୂରନ୍ଧର ॥ ରାଜଧାନୀ ଏଠୁ ଅନେକ ଦୂର ।

ବିଶାଳବାହୁ ॥ ସେଠି ପହଂଚିବାକୁ ଅନେକ ସମୟ ।

ବିଦ୍ୟାଧର ॥ ହୁଏତ ଆମ ସମସ୍ତଙ୍କର ମୂଲ୍ୟ ଆହୁରି ବଢ଼ି ଯାଇଥିବ ।

ଧୂରନ୍ଧର ॥ ଦଶ ହଜାର, କୋଡ଼ିଏ ହଜାର କିମ୍ବା······

ଏବଂ କହୁ କହୁ ହଠାତ୍ ଶଙ୍କିତ ହୋଇ ଉଠିଲେ ତିନିଜଣଯାକ । ଏବଂ ଯେମିତି ମୁଣ୍ଡ ପଦାକୁ ବାହାର କରିଥିଲେ, ସେମିତି ଭିତରକୁ ନେଇଗଲେ । ମଞ୍ଚ ଅନ୍ଧକାର ହେଲା ।

ତେଣେ କନ୍ତୁ ଦରବାର ସରଗରମ । ଏଇ ବଙ୍କ ଛନ-
ଜଣଙ୍କ ବିଷୟରେ ଚର୍ଚ୍ଚା କରୁ କରୁ ରାଜା ଉତ୍ୟକ୍ତ ।
କର୍ମଚାରୀଗଣ ମଧ୍ୟ କିଂକର୍ତ୍ତବ୍ୟବିମୂଢ଼ । ରାଜା ଏମାନଙ୍କୁ
ଧରିବାକୁ ନାନାଦି ପନ୍ଥା ବିଷୟରେ ଚିନ୍ତା କରୁଁ କରୁଁ
ହଠାତ୍ ଗୋଟାଏ ବୁଦ୍ଧି ପାଇଯାଇଚନ୍ତି, ତେଣୁ ସେ
ଚିତ୍କାର କରି ଉଠିଲେ । ଏବଂ ତାଙ୍କର କଥା ଜୁମ୍ଲାରେ
କହିଥିବା ସେଇ ବଙ୍କ ଛନଜଣଙ୍କ କଥାର ପ୍ରତିଧ୍ୱନି
ପରି ଅଥବା ପରିପୂରକ ପରି ଶୁଭିଲ । ସେ ସେମିତି
ଊର୍ଦ୍ଧ୍ୱବାହୁ ହୋଇ, ଆଦେଶ ଦେବା ଭଙ୍ଗୀରେ
ଉଚ୍ଚାରଣ କଲେ ।

ରାଜା ॥ ତିରିଶ ହଜାର !

ମନ୍ତ୍ରୀ ॥ ତିରିଶ ହଜାର ?

ରାଜା ॥ ହଁ, ତିରିଶ ହଜାର, ପ୍ରତ୍ୟେକ ମସ୍ତକର ମୂଲ୍ୟ ।

ସେନାପତି ॥ ତିରିଶ କେ ତିରିଶ, ତିରିଶ ଦୁନେ ଷାଠିଏ, ତିରିଶ୍ ତିରି-ତିରିଶ ତିରି······

ମନ୍ତ୍ରୀ ॥ ନବେ, ନବେ ହଜାର !

କଟୁଆଳ ॥ ମିଳିଯିବ । ଏଥର ନିଶ୍ଚୟ ଲୋକମାନେ ଲାଗିପଡ଼ି ଖୋଜିବେ ଘୁମୁଁ !

ରାଜା ॥ କ'ଣ କହିଲ, ଲୋକମାନେ ? ମଣିଷ-ମଣିଷମୁଣ୍ଡିଆ ?

ସାଧବ ॥ ନାଇଁ ଘୁମୁଁ, ଓଟ ମୁହାଁ ।

ରାଜା ॥ ଓଟ ମୁହାଁ, ସେମାନେ ମଣିଷ ନୁହନ୍ତି ।

ମନ୍ତ୍ରୀ ॥ ଓଟ ମୁହାଁ ।

ରାଜା ॥ ସେମାନଙ୍କର ଆଉ ଗୋଟାଏ ନାଁ ହଉ । ଆଉ ଗୋଟାଏ ନାଁ !

ମନ୍ତ୍ରୀ ॥ ( ସେନାପତିଙ୍କୁ ) ଆଉ ଗୋଟାଏ ନାଁ ?

ସେନାପତି ॥ ( ସାଧବଙ୍କୁ ) ଆଉ ଗୋଟାଏ ନାଁ ?

ସାଧବ ॥ ( କଣ୍ଟୁଆଳଙ୍କୁ ) ଆଉ ଗୋଟାଏ ନାଁ ?

ଆଉ ଗୋଟାଏ ନାଁ ସେମାନଙ୍କୁ ମିଳିଲା ନାହିଁ । ପରସ୍ପର ଭିତରେ ବହୁତ ମନ୍ତ୍ରଣା ଚାଲିଲା, ପରସ୍ପର ପରସ୍ପରଙ୍କୁ ପଚାରିଲେ କିନ୍ତୁ କେହି କହି ପାରିଲେ ନାହିଁ । କିନ୍ତୁ ଉତ୍ତର ଦେବାକୁ ପଡ଼ିବ କଣ୍ଟୁଆଳଙ୍କୁ, କାରଣ କଣ୍ଟୁଆଳ ପାଖରେ କଥାଟା ଛୁଣ୍ଟିଚି । ତେଣୁ ସେ ବିଚରା ଆଉ କିଛି ବାଟ ନପାଇ ଧାଇଁଗଲେ ରଜାଙ୍କ ସିଂହାସନ ପାଖକୁ । ଆଣ୍ଠେଇ ପଡ଼ି ହାତ ଯୋଡ଼ି କାକୁସ୍ଥ ଭଙ୍ଗୀରେ ଜଣା କରାଇଲା,

କଣ୍ଟୁଆଳ ॥ ଆଉ ଗୋଟାଏ ନାଁ ତୁମ୍ଭେ !

ରାଜା ପଡ଼ିଲେ ମହା ବିପଦରେ । ତାଙ୍କର ପାଞ୍ଚ ମନ୍ତ୍ରୀ ନପାରିଲେ, ରାଜାଙ୍କ ପାଖକୁ ଆସନ୍ତି । ରାଜା ଯଦି ନପାରିବେ ତା'ହେଲେ ସମ୍ମାନ ଆଉ ରହିବନି, ତାଙ୍କୁ କେହି ମାନିବେନି । ତେଣୁ କଣ୍ଟୁଆଳ କଥା ଶୁଣି ସେ ପ୍ରଥମେ ବିଚଳିତ ହୋଇ ପଡ଼ିଲେ, କିନ୍ତୁ ପର ମୁହୂର୍ତ୍ତରେ ନିଜକୁ ସମ୍ଭାଳି ନେଇ ଖୁବ୍ ଗମ୍ଭୀର ଭାବରେ ଚିନ୍ତା କରିବାକୁ ଲାଗିଲେ ।

ରାଜା ॥ ହଁ, ଆଉ ଗୋଟାଏ ନାଁ । ଆଉ ଗୋଟାଏ ନାଁ । ମଣିଷ ନୁହନ୍ତି । ମୋ' ରାଜ୍ୟର ପ୍ରଜା—ଓଟମୁହାଁ । ଓଟ···ଓଟିକି । ଓଟିକି ମଣିଷ । ଓଟିକି !

ରାଜା ଯେପରି ଠିକ୍ ଶବ୍ଦଟି ପାଇଗଲେ । ସେ ଉତ୍ଫୁଲ୍ଲ ହୋଇ, କଣ୍ଟୁଆଳଙ୍କୁ କହିଲେ,

ରାଜା ॥ ଓଁଟିକ !

କଟୁଆଳ ଶଙ୍ଖଟି ନେଇ ଦୌଡ଼ି ଆସିଲା, ବ୍ୟଗ୍ର ଭାବରେ ଅପେକ୍ଷା କରିଥିବା ଅନ୍ୟମାନଙ୍କ ପାଖକୁ, ଅନ୍ୟମାନେ ତାକୁ ଘେରିଗଲେ । ମନେ ମନେ ପ୍ରଶ୍ନ— ପାଇଲ ?

କଟୁଆଳ ॥ ଓଁଟିକ !

ହଠାତ୍ ସମସ୍ତ ଦୃଶ୍ୟ ବଦଳିଗଲା । ଟିକଏ ପୂର୍ବରୁ ଦରବାରରେ ଘୋଟି ଆସିଥିବା ଗାମ୍ଭୀର୍ଯ୍ୟ ହଠାତ୍ ଅପସାରିତ ହେଲା । ପାତ୍ର ମନ୍ତ୍ରୀଗଣ ଖୁବ୍ ବଡ଼ ପାଟିରେ 'ଓଁଟିକ' 'ଓଁଟିକ' ବୋଲି ଚିତ୍କାର କରି ରାଜାଙ୍କ ସିଂହାସନ ଚାରି ପାଖରେ ବୁଲିବାକୁ ଲାଗିଲେ । ଠିକ୍ ଉଦ୍ଦଣ୍ଡ କୀର୍ତ୍ତନ କଲା ଭଙ୍ଗୀରେ, ଊର୍ଦ୍ଧ୍ୱବାହୁ ଏବଂ ନୃତ୍ୟ ଛନ୍ଦ, ଏଇପରି କିଛି ସମୟ ବୁଲିଲା ପରେ ରାଜା ହାତ ଟେକି ନୀରବ ରହିବାକୁ ସଙ୍କେତ ଦେଲେ । ହଠାତ୍ ସବୁ ସ୍ତବ୍ଧ ହୋଇଗଲା । ସିଏ ଯୋଉଠି ଠିଆ ହୋଇଥିଲେ, ସେଇଠି ରହିଗଲେ । ରାଜା ଅତ୍ୟନ୍ତ ଆନନ୍ଦରେ ଏମାନଙ୍କ ଆଡ଼କୁ ପର୍ଯ୍ୟାୟକ୍ରମେ ଦୃଷ୍ଟି-ନିକ୍ଷେପ କରି, କହିଲେ,

ରାଜା ॥ ମୋ'ର ଓଠମୁହାଁ ଓଁଟିକମାନେ ଚିରଂଜୀବ ହୁଅନ୍ତୁ ।

ସମସ୍ତେ ॥ ରାଜା ସେମାନଙ୍କର ରକ୍ଷାକର୍ତ୍ତା ।

ପୁଣି ତୂର୍ଯ୍ୟନାଦ ହେଲା । ବୀର କାହାଳୀ, ଭେରୀ ତୁରୀ ମହୁରୀ ଆଉ ଯୋଡ଼ି ନାଗରା ବାଜି ଉଠିଲା । ଘୋଷକ ଉଚ୍ଚ ଗଳାରେ ଘୋଷଣା କଲା,

ଘୋଷକ ॥ ମହାରାଣୀ ପୁତ୍ତଳିକା ଦରବାରକୁ ଆଗମନ କରୁଛନ୍ତି···।

ପାତ୍ର ମନ୍ତ୍ରୀଗଣ ଧାଡ଼ି ବାନ୍ଧି ମହାରାଣୀଙ୍କୁ ସ୍ୱାଗତ କରିବା ପାଇଁ ମୁଣ୍ଡ ନୁଆଁଇ ଠିଆ ହୋଇଗଲେ ।

ଭିତରୁ ରାଣୀ ଆସିଲେ । ତାଙ୍କ ନାଁ ଯେମିତି ପୁତ୍ତଳିକା ସେ ଦେଖିବାକୁ ଯେମିତି କଣ୍ଢେଇଟିଏ ଭଳି । ତାଙ୍କ ପୋଷାକ ପରିଚ୍ଛଦ ବି କଣ୍ଢେଇର ପୋଷାକ । ଆଗରେ ପଛରେ ବର୍ଚ୍ଛାଧାରୀ ପାଇକ । ମଝିରେ ରାଣୀ ସବାରୀରେ ଆସୁଚନ୍ତି ।

ସବାରୀ ଆସି ବେଦୀ ପାଖରେ ରହିଲା । ରାଣୀ ସବାରୀରୁ ଓହ୍ଲାଇ ପ୍ରହରୀ ଗହଣରେ ମଞ୍ଚ ଉପରକୁ ଉଠିଲେ, ଏବଂ ତାଙ୍କ ଆସନ ପାଖରେ ଠିଆ ହେଲେ । ସବାରୀ ଚାଲିଗଲା । ପ୍ରହରୀମାନେ ନିଜ ସ୍ଥାନରେ ଯାଇ ଠିଆ ହେଲେ । ମୁଣ୍ଡ ଝୁଙ୍କେଇ ଠିଆ ହୋଇଥିବା ପାତ୍ର ମନ୍ତ୍ରୀଗଣ ସ୍ୱାଗତ ସମ୍ଭାଷଣ କଲେ ।

ସମସ୍ତେ ॥ ମହାରାଣୀ ପୁତ୍ତଳିକାଙ୍କୁ ଦରବାର ସ୍ୱାଗତ କରୁଚି ।

ରାଜା ॥ ମହାରାଣୀଙ୍କୁ ମୁଁ ବସିବାକୁ ଆଦେଶ କରୁଚି ।

ମହାରାଣୀ ତାଙ୍କ ଆସନରେ ବସିଲେ । ରାଜା ଅନ୍ୟ-ମାନଙ୍କୁ ଆସନ ଗ୍ରହଣ କରିବାକୁ ଇଙ୍ଗିତ କଲେ । ଆଦେଶ ପାଇଲାମାତ୍ରେ ଅନ୍ୟମାନେ ଉପବେଶନ-କଲେ । ରାଜା କିଛି ସମୟ ରାଣୀଙ୍କୁ ଅନେଇବା ପରେ ପଚାରିଲେ,

ରାଜା ॥ ମହାରାଣୀଙ୍କୁ ମୁଁ ପଚାରୁଚି, ଏପରି ସୁନ୍ଦର ରାଜ୍ୟ, ଯାହାର ପ୍ରଜାମାନଙ୍କର ମୁହଁ ଓଟମୁହଁ ପରି, ତା'ଠାରୁ ସୁନ୍ଦର ରାଜ୍ୟ ସେ ଦେଖିଚନ୍ତି କି ?

ମହାରାଣୀ ନୀରବ ରହିଲେ । ତା'ର କାରଣ ଉତ୍ତର ଦେବା ପାଇଁ ସେ ରାଜାଙ୍କ ଠାରୁ ଅଦେଶ ପାଇ ନଥିଲେ । ରାଣୀଙ୍କୁ ନୀରବ ରହିବା ଦେଖି ରାଜା ବିରକ୍ତ ହୋଇ ଉଠିଲେ ।

ରାଜା ॥ ମହାରାଣୀଙ୍କୁ ମୁଁ ଉତ୍ତର ଦବାକୁ ଆଦେଶ କରୁଛି । ସେ କହନ୍ତୁ ନାଁ ।

ରାଣୀ ॥ ନାଁ ।

ରାଜା ॥ ( ଅନ୍ୟମାନଙ୍କୁ ) ରାଣୀ ଦେଖି ନାହାନ୍ତି ।

ସମସ୍ତେ ॥ ରାଣୀ ଦେଖି ନାହାନ୍ତି, ଦେଖି ନାହାନ୍ତି ।

ରାଜା ॥ ଓଟମୁହାଁ ଲୋକଙ୍କ ପାଇଁ ଔଷଧିକ ବୋଲି ମୁଁ ଯୋଉ ନୂଆ ଶବ୍ଦ ତିଆରି କରିଛି, ସେ ସୁନ୍ଦର ଶୁଭୁଛି କି ନାହିଁ ?

ରାଣୀ ॥ ( ନୀରବ ହେଲେ )

ରାଜା ॥ ମହାରାଣୀ ପୁତ୍ତଳିକାଙ୍କୁ ମୁଁ ଉତ୍ତର ଦବା ପାଇଁ ଆଦେଶ କରୁଛି, ସେ କହନ୍ତୁ ସୁନ୍ଦର !

ରାଣୀ ॥ ସୁନ୍ଦର ।

ରାଜା ॥ ରାଣୀ କହୁଛନ୍ତି ସୁନ୍ଦର ।

ସମସ୍ତେ ॥ ସୁନ୍ଦର-ସୁନ୍ଦର-ସୁନ୍ଦର !

ରାଜା ॥ ମହାରାଣୀ ପୁତ୍ତଳିକା ଉତ୍ତର ଦଅନ୍ତୁ, ସେ ସୁଖୀ କି ?

ରାଣୀ ॥ ( ନିରୁତ୍ତର )

ରାଜା ॥ ମୋ'ର ଆଦେଶ ଉତ୍ତର ! ସେ କହନ୍ତୁ ସୁଖୀ !

ରାଣୀ ॥ ସୁଖୀ ।

ରାଜା ॥ ମହାରାଣୀ ସୁଖୀ ।

ସମସ୍ତେ ॥ ସୁଖୀ, ଅତ୍ୟନ୍ତ ସୁଖୀ !

ରାଜା ॥ ରାଜ୍ୟର ସମାଚାର ମୁଁ ମନ୍ତ୍ରୀଙ୍କ ପାଖରୁ ଶୁଣିବାକୁ ଚାହେଁ ।

ମନ୍ତ୍ରୀ ଠିଆ ହେଲେ । ଉପରେ ଦୁଇ ଥର ହାତ ଠୋକିଲେ । ଅନ୍ୟମାନଙ୍କୁ ବଳଲରେ ଅନେଇଲେ । ସେମାନଙ୍କ ନିଷ୍କରୁଣ ବୃହାଣୀ ଏବଂ ପଥର ଭଳି ଭାବହୀନ ମୁହଁରୁ କୌଣସି ପ୍ରକାର ଆଶା ବା

ଅଶ୍ୱାସନାର ସଂକେତ ନପାଇ ବାଧ ହୋଇ ବଖାଣି-
ବାକୁ ଆରମ୍ଭ କଲେ ।

ମନ୍ତ୍ରୀ ॥ ରାଜ୍ୟ ନିରାପଦ । ପ୍ରତିଦିନ ସଂଧ୍ୟାରେ ଏବଂ ସକାଳେ ଆମର
ଔଷ୍ଟିକ ପ୍ରଜାମାନେ ମହାରାଜାଙ୍କ ବନ୍ଦନା ଗାନ କରନ୍ତି ।

ରାଜା ତ ମନ୍ତ୍ରୀଙ୍କ କଥା ଶୁଣି ଖପା । ସେ ଅଉ ସମ୍ଭାଳି
ପାରିଲେ ନାହିଁ । ଏତେ ବଡ଼ ଦରବାରଟାରେ ମନ୍ତ୍ରୀଙ୍କୁ
କଟମଟ କରି ଅନେଇ କହିଲେ—

ରାଜା ॥ ମାତ୍ର ଦୁଇଥର ? ଆଜଠୁ ଦି'ପହରେ ଖାଇବା ପୂର୍ବରୁ ଆଉ
ରାତିରେ ଶୋଇବା ପୂର୍ବରୁ ସେମାନେ ମୋ' ବନ୍ଦନା ଗାନ
କରିବେ । ଚାରିଥର ।

ମନ୍ତ୍ରୀ ॥ ପ୍ରଭୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ ।

ରାଜା ॥ ସେନାପତି, ଯୁଦ୍ଧ ?

ସେନାପତିଙ୍କ ପାଳି ପଡ଼ିବାରୁ ସେନାପତି ଉଠିଆଁ ରେ
ଉଠି ପଡ଼ିଲେ । ମନ୍ତ୍ରୀ ବିପଦଟା ଚାଲିଗଲା ବୋଲି
ସ୍ୱସ୍ତିରେ ନିଜ ଜାଗାରେ ବସି ପଡ଼ିଲେ । ସେନାପତି
ରାଜାଙ୍କୁ ସମ୍ମାନ ଦେଖାଇବାକୁ ଯାଇ ଅଣ୍ଟାରେ ହାତ
ମାରି ଦେଖିଲେ ବେଳକୁ ଅଣ୍ଟାରେ ତରବାରି ନାହିଁ ।
ସେ ଅଦ୍ଭୁତ ଉଠିଆଁ ହୋଇଗଲେ । ତାଙ୍କ ପାଟି
ଖନି ବାଜିଗଲା ।

ସେନାପତି ॥ ପ୍ରଭୁ ଯୁଦ୍ଧ-ଯୁଦ୍ଧ-ମାନେ କ'ଣ ?

ରାଜା ॥ ଯୁଦ୍ଧ ମାନେ ଯୁଦ୍ଧ !

ସେନାପତି ॥ ବାହାରୁ ବିପଦର ଆଶଙ୍କା ନାହିଁ ପ୍ରଭୁ ।

ରାଜା ॥ ତା' ମାନେ ମୋ'ର ସେନା ବାହିନୀ କାମ ବିନା ବସି
ରହିଛନ୍ତି ?

ସେନାପତି ॥ ନାଁ ପ୍ରଭୁ । ଯେତେବେଳେ ଶତ୍ରୁ ସାଙ୍ଗରେ ଯୁଦ୍ଧ କରିବାର
ଅବକାଶ ନାହିଁ, ସେତେବେଳେ ପ୍ରତ୍ୟେକ ଦିନ ସେମାନଙ୍କୁ

ନିଜ ନିଜ ଭିତରେ ଯୁଦ୍ଧ କରିବାକୁ କୃହାଯାଉଚି । ଫଳରେ ପ୍ରତ୍ୟେକ ଦିନ ନିଜ ନିଜ ଭିତରେ ଯୁଦ୍ଧ କରି ଅନ୍ତତଃ ପାଞ୍ଚ ଛ'ଜଣ ଲୋକ ମରୁଛନ୍ତି ।

ରାଜା ॥ ଉତ୍ତମ !

ବିଦ୍ୟାଳୟର ଛାତ୍ରମାନେ ଶିକ୍ଷକ ପଚାରିଲେ ଯେପରି ଉତ୍ତର ଦେବାକୁ ହାତ ଟେକନ୍ତି, ଏବଂ ଅତି ଉତ୍ସାହି ଛାତ୍ରଟିର ହାତ ବହୁତ ଉଚ୍ଚକୁ ଉଠିଯାଏ, ସେହିପରି ସେନାପତିର କଥା ସରୁ ନସରୁଣୁ କଟୁଆଳ କ'ଣ କହିବ ବୋଲି ହାତ ଟେକି ଦେଲା, ଏବଂ ମୁହଁରେ ବାଁ ହାତ ରଖି 'ମୁଁ'—'ମୁଁ'—ଏଇପରି ଏକ ପ୍ରକାର ଚିତ୍କାର କଲା । ତାହା ରାଜାଙ୍କ ଦୃଷ୍ଟିଗୋଚର ହେଲା । ସେ ସଙ୍କେତରେ ସେନାପତିକୁ ବସିବାକୁ କହି କଟୁଆଳକୁ ଠିଆ ହୋଇ ବୟାନ କହିବାକୁ ଇଙ୍ଗିତ କଲେ । କଟୁଆଳ ଠିଆ ହୋଇ ତା'ର ବୟାନ ଆରମ୍ଭ କଲା ।

କଟୁଆଳ ॥ ଆମର ନଗର ରକ୍ଷୀମାନେ ସେଇ ମଲା ସୈନ୍ୟମାନଙ୍କୁ ନେଇ ରାଜ୍ୟ ବାହାରେ ପକେଇ ଦେଇ ଆସୁଛନ୍ତି ।

ରାଜା ॥ ( ରାଗି ଯାଇ ) ମନ୍ତ୍ରୀ, କଟୁଆଳକୁ ବରଖାସ୍ତ କର ।

କଟୁଆଳ ଭୟରେ ଥରୁଥିଲା । ଯଦିଓ ତା'ର ଅପରାଧ ବିଷୟରେ ସେ ଆଦୌ ଅବହିତ ନଥିଲା । ତେଣୁ ସେ ରାଜାଙ୍କ ସମ୍ମୁଖରେ ତେଢା ତଳେ ଆଣ୍ଠେଇ ପଡ଼ି ହାତ ଯୋଡ଼ି ନିବେଦନ କଲା,

କଟୁଆଳ ॥ ପ୍ରଭୁ, ଦୋଷ ମାର୍ଜନା କରନ୍ତୁ ।

ରାଜା ॥ ତମେ ମୋ' ଦେଶର ଲୋକଙ୍କୁ ବାହାରକୁ ପଠେଇ ଦଉଚ ?

କଟୁଆଳ ॥ ସେ ସବୁ ତ ଶବ ପ୍ରଭୁ !

ରାଜା ॥ ଶବ ହେଲେ ବି ସେମାନେ ଯୁଦ୍ଧ କରି ପ୍ରାଣ ଦେଇଚନ୍ତି । ସେମାନଙ୍କୁ ରାଜ୍ୟ ବାହାରକୁ ପଠାଯିବ ନାହିଁ ।

କଣ୍ଟୁଆଳ ॥ ମନେ ରହିଲା ହଜୁର !

ରାଜା ॥ ମୋ' ଦେଶର ଓଠ ମୁହଁ ସବୁ ସୁନ୍ଦର ହୋଇଥିବା ହେତୁ ଅନ୍ୟ ଦେଶମାନେ ସେ ଶବକୁ ଦେଖି ଅନୁକରଣ କରି ପାରନ୍ତି ।

ମନ୍ତ୍ରୀ ॥ ଆହା, ମହାରାଜାଙ୍କର କି ବିଜ୍ଞତା !

ସେନାପତି ॥ ମହାରାଜାଙ୍କର କି ବିଚକ୍ଷଣତା, ଆହା !

ରାଜା ॥ ମୁଁ ଚାହେଁନା, ଅନ୍ୟ ରାଜ୍ୟର ଲୋକମାନେ ମୋ'ର ଅଧିକ ପ୍ରଜାମାନଙ୍କ ପରି ଓଠ ମୁହଁ ଧରି ସୁନ୍ଦର ହୁଅନ୍ତୁ, ଭାଗ୍ୟବାନ୍ ହୁଅନ୍ତୁ !

ମନ୍ତ୍ରୀ ॥ କଣ୍ଟୁଆଳ ଦଣ୍ଡ ପାଇବାର ଯୋଗ୍ୟ !

ସେନାପତି ॥ ହଁ, ଯୋଗ୍ୟ ।

ରାଜା ॥ ତାକୁ ଦଣ୍ଡ ଦିଆଯିବ !

କଣ୍ଟୁଆଳ ॥ କ୍ଷମା କରନ୍ତୁ ପ୍ରଭୁ, ନଜାଣିବା ପଣରେ ଦୋଷ କରିଚି । ମୋତେ କିଛି ଛୋଟ ଦଣ୍ଡ ଦିଆ ହଉନ୍ତୁ ।

ରାଜା ॥ ତମେ କି ଦଣ୍ଡ ପାଇବ ?

କଣ୍ଟୁଆଳ ॥ କି ଦଣ୍ଡ ପାଇବ ?

ପ୍ରଥମେ କଣ୍ଟୁଆଳ ନିଜକୁ ନିଜେ ପଗ୍ଭରିଲା, ତା'ପରେ ଡ଼ୋଳରେ ଅନେଇଲା ମନ୍ତ୍ରୀଙ୍କୁ । ମନ୍ତ୍ରୀ ତା' ଆଡ଼ୁ ମୁହଁ ଫେରେଇ ଅନ୍ୟ ଆଡ଼େ ଗ୍ଭହିଁଲେ । ହତାଶ ହୋଇ ସେ ଅନେଇଲା ସେନାପତିଙ୍କୁ । ସେ ମଧ୍ୟ ଘୂରି ପଡ଼ିଲେ । ବର୍ତ୍ତମାନ ଏକମାତ୍ର ଆଶ୍ୱାସନା ସାଧବ । କଣ୍ଟୁଆଳ ତା' ପାଖକୁ ଦୌଡ଼ିଗଲା । ଅତି ବିକଳରେ ପଗ୍ଭରିଲା,

କଣ୍ଟୁଆଳ ॥ ହଇ, କ ଦଣ୍ଡ ପାଇବ ?

ଏଥର କଣ୍ଟୁଆଳର ଏ କଥାରେ ସାଧବ ଟିକିଏ ସମ୍ବେଦନଶୀଳ ହୋଇ ଉଠିଲ । ସେ ଆଜ୍ଞାର ଭଙ୍ଗିରେ ତାଙ୍କୁ ଉଠା ବସା ହବାର ଦଣ୍ଡ ଗ୍ରହଣ କରିବା ପାଇଁ କହିଲ । କଣ୍ଟୁଆଳ ଟିକିଏ ଆଶାର ଆଲୋକ ଦେଖି ପାରିଲ, ସେ ରାଜାଙ୍କ ପାଖକୁ ଦୌଡ଼ି ଯାଇ ଆଣ୍ଠେଇ ପଡ଼ି ପ୍ରାର୍ଥନା କରିବା ଢଙ୍ଗରେ କହିଲ,

କଣ୍ଟୁଆଳ ॥ ଦରବାରରେ ସମସ୍ତଙ୍କ ଆଗରେ କାନଧରି ଉଠାବସା ହେବ ।

ରାଜା ॥ ମଞ୍ଜୁର !

ମନ୍ତ୍ରୀ ॥ କାନ ଧରି ଉଠାବସା ହୁଅ ।

ସେନାପତି ॥ ଯାଅ !

କଣ୍ଟୁଆଳ ତା' ନିଜ ଜାଗାକୁ ଫେରି ଆସିଲ । ସେ ଉପେକ୍ଷାକୃତ ନିର୍ଭିକ । କାନ ଧରି ଉଠ୍‌ବସ ହେଲ ଏକ, ଦୁଇ, ତିନି ଏମିତି ଗଣିଗଣି । ଏଇ ସମୟରେ ଯାହା ଦରବାରର ଇତିହାସରେ କେବେ ଘଟି ନଥିଲ, ଖାଲି ସେ ସୁନନ୍ଦା, ସେ ହସ ଚାପି ରଖି ପାରିଲେ ନାହିଁ । ଦରବାରର ସମସ୍ତଙ୍କୁ ଚମତ୍କୃତ କରି ହଠାତ୍ ଖୁବ୍ ଜୋର୍‌ରେ ହସି ଉଠିଲେ । ରାଜା ମଧ୍ୟ ଚକିତ ହୋଇ ପଡ଼ିଲେ । ସେ ଆଖି ଟେକି କଣ୍ଟୁଆଳକୁ ଦେଖିଲେ ଏବଂ ରାଣୀଙ୍କ ଆଡ଼କୁ ଅନେଇଲେ । ରାଣୀ ସେମିତି ହସୁଥା'ନ୍ତି ।

ରାଜା ॥ ମହାରାଣୀ ଯୁବରାଜଙ୍କୁ ମୁଁ ହସିବାକୁ ଆଦେଶ କରିନ !

ମହାରାଣୀଙ୍କର ହସ ହଠାତ୍ ବନ୍ଦ ହୋଇଗଲ । ସେ ଯେପରି ଲାଜିଗଲେ, ରାଜା ତାଙ୍କର ଉପେକ୍ଷନାକୁ ଖାତି

ସମସ୍ତ ପାଇଁ ନିଜ ଭିତରେ ଦମନ କରିବାକୁ ଚେଷ୍ଟା କରୁଥିଲେ ।

ସଫଳ ହେଲାପରେ ସେ ତାଙ୍କର ଦୃଷ୍ଟି ପାତ୍ର ମନ୍ତ୍ରୀଙ୍କ ଉପରେ ପକାଇବାକୁ ଲଗିଲେ । ଘୂରି ଘୂରି ଯାଇ ତାଙ୍କର ଆଖି ସ୍ଥିରହେଲା ସାଧବ ଉପରେ । ସାଧବ ଟିକିଏ ଇତସ୍ତତଃ କଲେ ।

ରାଜା ॥ ସାଧବ !

ସାଧବ ॥ ହଜୁର ! ( ଠିଆ ହୋଇ )

ରାଜା ॥ ମୋ' ରାଜ୍ୟର ବ୍ୟବସାୟ ବାଣିଜ୍ୟ କିପରି ଚାଲିଛି ?

ସାଧବ ॥ ଖୁବ୍ ଭଲ ଭାବରେ ଚାଲିଛି ହଜୁର । ବହୁତ ଦିନ ଧରି ଜାହାଜପତ୍ର ସବୁ ପଡ଼ି ରହିଥିଲା । ଔଷିକମାନେ କଣ୍ଣ ନଥିଲେ । ମୋ' ବାପା ହିଁଠାରୁ ମୋତେ ଗୋଟିଏ ବୁଦ୍ଧି ଦେଲେ ।

ରାଜା ॥ ( ପୁଣି ରାଗିଗଲେ ) ସେନାପତି !

ସେନାପତି ॥ ହଜୁର !

ରାଜା ॥ ସାଧବକୁ ଦଣ୍ଡ ଦିଅ ।

ସାଧବ ଭୟ ଏବଂ ଆତଙ୍କରେ ଥରେଇ ପଡ଼ିଲା । ତା' ଦେହଯାକ ଗୋଟାପଣେ ଥରୁଥିଲା । ତା'ପାଟି ଝାଳମାରି ଯାଉଥିଲା । କୌଣସି ଉପାୟରେ ସେ କହିଲା,

ସାଧବ ॥ ହଜୁର !

ରାଜା ॥ ମୁଁ ଥାଉଁ ଥାଉଁ ତମେ ତମ ବାପାଙ୍କ ବୁଦ୍ଧିରେ ଚାଲୁଛ ? ତମେ କ'ଣ ଜାଣିନ, ରାଜା, ବାପମାନଙ୍କଠାରୁ, ଗୁରୁଜନମାନଙ୍କଠାରୁ ବି ବୁଦ୍ଧିମାନ ?

ସାଧବ ॥ ଆଗରୁ ଜାଣି ନଥିଲି, ଏବେ ଜାଣିଗଲି ହଜୁର । ଏଣିକି ହଜୁରଙ୍କ ବୁଦ୍ଧି ନେଇ କାମ କରିବି ।

ରାଜା ॥ ତମ ବାପା ତୁମକୁ କ'ଣ ବୁଦ୍ଧି ଦେଲେ ?

ସାଧବ ॥ ଜନଷ ପତ୍ରର ଦାମ୍ କମେଇ ଦଅ । ତା'ହେଲେ ହୁମୁଁ, ଲୋକମାନେ କଣିବାକୁ ଆରମ୍ଭ କଲେ ।

ରାଜା ॥ ତମେ ଗଧ ।

ସାଧବ ॥ ନାହିଁ ହୁମୁଁ ଓଟ ମୁହିଁ ।

ରାଜା ॥ ତମ ବାପା ଜଣେ ଗଧ ।

ସାଧବ ॥ ଓଟଠାରୁ ଓଟ ତ ଜନ୍ମ ହୁଏ ହୁମୁଁ ।

ରାଜା ॥ ଗଧଠାରୁ ବ ଓଟ ଜନ୍ମ ହୁଏ ।

ସାଧବ ବବ୍ରତ ହୋଇ ସମସ୍ତଙ୍କ ଆଡ଼କୁ ଅନେଇଲ । ମନ୍ତ୍ରୀ, ସେନାପତ, କଟୁଆଳ, ସମସ୍ତେ, ତା' ଆଡ଼କୁ ଆଙ୍ଗୁଳ ନର୍ଦ୍ଦେଶ କର ଏକ ସ୍ୱରରେ କହ ଉଠିଲେ "ହୁଏ" ପାଖରୁଣ୍ଡରେ ଛେଳ କୁକୁର ହେଲଉଲ, ବଚରା ସାଧବକୁ ଅଗତ୍ୟା ମାନ ନବାକୁ ପଡ଼ଲ; ସେ ବନମ୍ର ସହକାରେ ମାନ ନେଲ ।

ସାଧବ ॥ ହୁଏ ।

ରାଜା ॥ ଜନଷପତ୍ରର ଦାମ୍ ବଢ଼େଇ ଦଅ । ମନ୍ତ୍ରୀ, ସମସ୍ତଙ୍କୁ କୁହ, ଇଏ ମୋ'ର ଆଦେଶ, ମୋ' ରାଜ୍ୟରେ ସମସ୍ତେ ଜନଷପତ୍ର ଚଢ଼ା ଦାମ୍‌ରେ କଣିବାକୁ ବାଧ୍ୟ ହେବେ ।

ମନ୍ତ୍ରୀ ॥ ମହିମାଙ୍କର ଆଦେଶ ପାଳତ ହବ ହୁମୁଁ !

ଏତେବେଳେକେ ଦରବାର କାମ ଚାଲିଲ । ରାଜା କ'ଣ କହବେ ଟିକଏ ଭାବଲେ ତା' ପରେ ମନେ ମନେ ଠିକ୍ କରି ନେଲେ କ'ଣ କହବେ । ସେ ମନ୍ତ୍ରୀଙ୍କୁ କହଲେ,

ରାଜା ॥ ଊଷିକମାନଙ୍କ ପାଇଁ ମୋ'ର ଗୋଟାଏ ବାଣୀ !

ସେନାପତ ॥ ( ମନ୍ତ୍ରୀଙ୍କୁ ) ଊଷିକମାନଙ୍କୁ ମହାରାଜା ବାଣୀ ଦବାକୁ ଚାହାନ୍ତ ।

ମନ୍ତ୍ରୀ ଗୁରୁ ଅଡ଼କୁ ଦୃଷ୍ଟି ନିକ୍ଷେପ କଲେ । ଶେଷରେ
ଦୃଷ୍ଟି ପଡ଼ିଲା ଦର୍ଶକମାନଙ୍କ ଉପରେ । ସେମାନଙ୍କ
ଉପରୁ ଦୃଷ୍ଟି ବୁଲେଇ ଆଣି ସେ ରାଜାଙ୍କ ଆଡ଼କୁ
ଚାହିଁଲେ ।

ମନ୍ତ୍ରୀ ॥ ଦେଖିବା ହୁଅନ୍ତୁ ପ୍ରଭୁ ! ଆପଣଙ୍କ ବାଣୀ ଶୁଣିବା ପାଇଁ
କପଟ ଆମର ଓଟମୁହାଁମାନେ ଉଦ୍‌ଗ୍ରୀବ ହୋଇ ଅନେଇ
ବସିଛନ୍ତି । ( ତା'ପରେ କଟୁଆଲକୁ ଚାହିଁ ) ଯାଅ, ପ୍ରଚାର
କର !

କଟୁଆଲ ଆଗେଇ ଆସିଲା । ଦର୍ଶକମାନଙ୍କୁ ଉଦ୍ଦେଶ୍ୟ
କରି ନାଗରା ବଜେଇ କହିବା ଭଙ୍ଗୀରେ କହିଲା,

କଟୁଆଲ ॥ ଯିଏ ଯୋଉଠି ଅଛ, ଟୋକା, ବୁଢ଼ା, ମାଈ ଅଣ୍ଡିରା, ପିଲା
ପିଚିକା, ଯୁବକ ତରୁଣୀ ଓଟିକମାନେ ଶୁଣ ! ଆମର ରାଜା
ସୁରେନ୍ଦ୍ର ପ୍ରତାପ ଓଟିକାଧିପତି ତୁମମାନଙ୍କୁ ବାଣୀ ଦେବେ ।

ପ୍ରଚାର ସାରି କଟୁଆଲ ତା' ଜାଗାକୁ ଫେରିଲେ ।
ଟିକିଏ ପରେ ରାଜା ଉଠିଲେ । ରାଣୀ କିନ୍ତୁ ସେଇ
ପରି ବସିଥାନ୍ତି । ରାଜା ମଞ୍ଚାରୁ ଓହ୍ଲେଇ ଆସିଲେ ।
ମନ୍ତ୍ରୀ, ସେନାପତି ସାଧବ ଏବଂ କଟୁଆଲ ଗହଣରେ
ଆଗକୁ ମାଡ଼ି ଆସିଲେ । ଏକାବେଳେ ଦର୍ଶକମାନଙ୍କ
ସମ୍ମୁଖରେ ଠିଆହେଲେ ସେ । ମନ୍ତ୍ରୀ ସେନାପତି ସାଧବ
ଏବଂ କଟୁଆଲ ଆଣ୍ଠେଇ ପଡ଼ି ହାତ ଯୋଡ଼ିଲେ ।
ରାଜା ଦର୍ଶକମାନଙ୍କୁ ଉଦ୍ଦେଶ୍ୟ କରି ତାଙ୍କ ବାଣୀ
ପ୍ରଚାର କଲେ ।

ରାଜା ॥ ମୋ'ର ଓଟ ମୁହାଁ ଓଟିକମାନେ ! ମୁଁ ବୁଝି ପାରୁଚି ତମେ-
ମାନେ ସୁଖୀ । ତମମାନଙ୍କର କିଛି ଦୁଃଖ ନାହିଁ । ମୁଁ ଜାଣେ
ତମେମାନେ ଉପାସରେ ରହିଲେ ବି ମୁହଁ ଖୋଲିବନି । ମୂର୍ଖ
ହେଲେ ବି ପାଠ ପଢ଼ିବନି । ମୁଁ ଏହା ମଧ୍ୟ ଜାଣେ, ତମେ-
ମାନେ ସଣିଷ ମୁହଁ ଧରିବାକୁ ଘୃଣା କର । ମନେରଖ, ଓଟ

ମୁହଁପରେ ସୁନ୍ଦର ମୁହଁ ଜଗତରେ ନାହିଁ । ମୋ'ଠାରୁ ଭଲ ରାଜା ଦୁନିଆଁରେ ନାହାନ୍ତି । ମୁଁ ଜାଣେ, ମୋ'ର ବାଣୀ ଶୁଣି ତମେ ମାନେ ମୋ' ନାଁରେ ଜୟଧ୍ୱନୀ ଦବ !

କିନ୍ତୁ କେହି ଦର୍ଶକ ଜୟଧ୍ୱନୀ ଦେଲେ ନାହିଁ । ରାଜା ବିରକ୍ତ ହୋଇ ଉଠିଲେ ତାଙ୍କର କର୍ମଚାରୀମାନଙ୍କ ଉପରେ ! ରାଜାଙ୍କର ମାନ ସମ୍ମାନ ଯେମିତ ଏଇଗଲା, ନେଇଗଲା ଅବସ୍ଥା । ସେ ରାଗିଗଲେ ।

ରାଜା ॥ ମନ୍ତ୍ରୀ, ସେନାପତି !

ସେମାନେ ବି ବୁଝିପାରୁଥିଲେ ଘଟଣାଟା ଠିକ୍ ବାଟରେ ଯାଉନି । ଯେତେବେଳେ କେହି ଜୟଧ୍ୱନୀ ଦେଉ ନାହାନ୍ତି, ସେତେବେଳେ ସେ କର୍ମଟି ସେମାନଙ୍କର କରିବା ଉଚିତ । ତେଣୁ ସେମାନେ ଠିଆ ହୋଇ ପଡ଼ିଲେ । ହାତ ଉପରକୁ ଟେକି ଏକ ସ୍ୱରରେ ଜୟଧ୍ୱନୀ ଦେଲେ ।

ମନ୍ତ୍ରୀ ॥ ଜୟ ଓଟିକ ରାଜ୍ୟର ଏକାଙ୍ଗ ଚକ୍ରବର୍ତ୍ତୀ, ମହାରାଜାଧିରାଜ ସୁରେନ୍ଦ୍ର ପ୍ରତାପଙ୍କର—

ସମସ୍ତେ ॥ ଜୟ !

ରାଜା ॥ ଦରବାର ଭଙ୍ଗ ହେଲା !

କହି ରାଜା ଚାଲିଗଲେ, ଆଗରେ ପଛରେ ଦେହରକ୍ଷୀ । ରାଣୀଙ୍କୁ ସେ ଆଦେଶ ଦେଲେ ନାହିଁ ସେ ଯିବେକି, ଏକଥା ମଧ୍ୟ ସେ ଭୁଲି ଯାଇଥିଲେ, ତେଣୁ ରାଣୀଙ୍କୁ ତାଙ୍କର ଆସନଟିରେ ସେଇ କଷ୍ଟେଇ ଭଳି ବସି ରହିବାକୁ ହେଲା । ମନ୍ତ୍ରୀ ସେନାପତି ସାଧବ କରୁଥିଲା ଚିକିଏ ସ୍ୱସ୍ତିରେ ନିଃଶ୍ୱାସ ଛାଡ଼ିଲେ । କିନ୍ତୁ ଦରବାର ଭାଙ୍ଗିଲେ ଯେ ସେମାନଙ୍କୁ ଛୁଟି ମିଳିବ, ଏକଥା କୌଣସି ଶାସ୍ତ୍ରରେ ନାହିଁ, ରାଜାଙ୍କ ପରେ ପରେ ମନ୍ତ୍ରୀ ମଧ୍ୟ ରାଜାଙ୍କ ପଦ ପରିବେଷଣ କଲେ ।

ମନ୍ତ୍ରୀ ॥ ଦରବାର ଭଙ୍ଗ ହେଲା ।

ସେମାନେ ପଛକୁ ଫେରିବା ସମୟରେ ହଠାତ୍ ଆବିଷ୍କାର କଲେ, ରାଣୀ ସେଇପରି ନିଜ ଜାଗାଟିରେ ବସିଛନ୍ତି । ସେମାନେ ବିସ୍ମିତ ହେଲେ ଏବଂ ପରସ୍ପର ଭିତରେ କୁହାକୁହି ହେଲେ ।

ସେନାପତି ॥ ଆରେ ରାଣୀ କାହିଁକି ତଥାପି ବସିଛନ୍ତି ?

ମନ୍ତ୍ରୀ ॥ ସତ କଥା ତ ! ଦରବାର ଭଙ୍ଗ ହେଲା, ଅଥଚ ମହାରାଣୀ ତଥାପି ବସିଛନ୍ତି !

ରାଣୀ ॥ ( ସବୁ କଥା ନିଜ ମନକୁ ମନ କହୁଥିଲେ ) ପୁତ୍ତଳିକା !

ସେନାପତି ॥ ତାଙ୍କର ପରମ ସୌଭାଗ୍ୟ ଯେ, ସେ ରାଜାଧିରାଜ ସୁରେନ୍ଦ୍ର ପ୍ରତାପଙ୍କ ରାଣୀ ।

ରାଣୀ ॥ ପୁତ୍ତଳିକା !

ମନ୍ତ୍ରୀ ॥ ତାଙ୍କର ପରମ ସୌଭାଗ୍ୟ ଯେ,ସେ ଓଟମୁହାଁ ରାଜ୍ୟର ମହାରାଣୀ

ରାଣୀ ॥ ପୁତ୍ତଳିକା !

କଟୁଆଳ ॥ ତାଙ୍କର ଖୁସି ହବାର କଥା ଯେ, ଓଟମୁହାଁ ମାନେ ରାଜାଙ୍କ କଥା କହିଲାବେଳେ ରାଣୀଙ୍କ କଥା ମନେ ପକାନ୍ତି ।

ମାଧବ ॥ ରାଜାଙ୍କ ଆଦେଶରେ ରାଣୀଙ୍କଠାରୁ ଅଧିକ ସୁନ୍ଦରୀମାନେ ଆମ ରାଜ୍ୟରୁ ନିର୍ବାସିତା । ତେଣୁ ସେ ଏ ରାଜ୍ୟର ଶ୍ରେଷ୍ଠା ସୁନ୍ଦରୀ ।

ରାଣୀ ॥ ପୁତ୍ତଳିକା !

ମନ୍ତ୍ରୀ ॥ ଅଥଚ ଯେତେବେଳେ ପଚାର, ସେ ସେଇ ଗୋଟିଏ କଥା କହିବେ ।

ରାଣୀ ॥ ପୁତ୍ତଳିକା ।

ସେନାପତି ॥ କାହିଁକି ?

ରାଣୀ ॥ ପୁତ୍ତଳିକା ।

ସେନାପତି ॥ ମହାରାଜ ସତରେ ମହାରାଣୀଙ୍କୁ ଅତ୍ୟନ୍ତ ଭଲ ପାଆନ୍ତି ।

ମନ୍ତ୍ରୀ ॥ ବେଶି କଥା କହିଲେ ପରିଶ୍ରମ ହବ ବୋଲି ମାତ୍ର ଗୋଟିଏ ଶବ୍ଦ କହିବାକୁ ଆଦେଶ ଦେଇଛନ୍ତି ।

ରାଣୀ ॥ ପୁତ୍ତଳିକା !

ଏହି ସମୟରେ ହଠାତ୍ ଦରବାର ଭିତରକୁ ରାଜା ପଶି ଆସିଲେ । ଏହା ମଧ୍ୟ ଅପ୍ରତ୍ୟାଶିତ ଥିଲା । କିନ୍ତୁ ସେ ଯା' ହେଉ, ରାଜା ପହଞ୍ଚିବା କ୍ଷଣି ପାତ୍ରମନ୍ତ୍ରୀଗଣ ହଠାତ୍ ଠିଆ ହୋଇ ପଡ଼ିଲେ ଏବଂ ନିଜ ନିଜ ଜାଗାକୁ ଚାଲିଗଲେ । ପ୍ରହରୀ ଦୁଇଜଣ ମଧ୍ୟ ରାଜାଙ୍କ ସାଙ୍ଗରେ ଆସି ନିଜ ନିଜ ଜାଗା ମାଡ଼ି ଠିଆ ହେଲେ । ରାଜାଙ୍କର ଦୃଷ୍ଟି ପଡ଼ିଲା ବସିଥିବା ରାଣୀଙ୍କ ଉପରେ । ସେ ମଞ୍ଚ ପାଖକୁ ଚାଲିଗଲେ, ଏବଂ ରାଣୀଙ୍କୁ ଉଦ୍ଦେଶ୍ୟ କରି କହିଲେ ।

ରାଜା ॥ ଦରବାର ଭଙ୍ଗ ହେଲା, ଅଥଚ ମହାରାଣୀ ବସିଛନ୍ତି !

ରାଣୀ ॥ ପୁତ୍ତଳିକା !

ରାଜା ॥ ସେ ଶବ୍ଦ ଅନ୍ୟମାନଙ୍କ ପାଇଁ ।

ରାଣୀ ॥ ମହାରାଜ ଚାଲିଗଲେ ବି, ତାଙ୍କ ସିଂହାସନ ତ ଅଛି !

ରାଜା ॥ ସିଂହାସନ ନେଇ ଆସ । ମୋ'ର ଆଦେଶ, ମହାରାଣୀ ମୋତେ ଅନୁସରଣ କରନ୍ତୁ ।

ମହାରାଣୀ ଆଦେଶ ପାଇ ଠିଆହେଲେ ଏବଂ ମଞ୍ଚରୁ ଓହ୍ଲାଇ ଆସି ରାଜାଙ୍କ ପାଖରେ ପହଞ୍ଚିଲେ । ରାଜା ଏବଂ ରାଣୀ ଦରବାର କକ୍ଷରୁ ଚାଲିଗଲେ । ସେ ଚାଲି-ଯିବା ପରେ ପ୍ରହରୀ ଦୁଇଜଣ ରାଜାଙ୍କ ସିଂହାସନ ଓ ରାଣୀଙ୍କ ଆସନ ଉଠେଇ ନେଇ ଚାଲିଗଲେ । କର୍ମଚାରୀମାନେ ସତକୁ ସତ ଏଥର ଟିକିଏ ଭଲ ଭାବରେ ଆଶ୍ୱସ୍ତ ହେଲେ । କାରଣ ବର୍ତ୍ତମାନ ଆଉ

ରାଜାଙ୍କର ଫେରିବାର କୌଣସି ସମ୍ଭାବନା ନଥିଲା । ତେଣୁ ସେମାନେ ବର୍ତ୍ତମାନ ଟିକିଏ ଅଧିକ ଖୋଲି ଖୋଲି ଭାବରେ ଆଲୋଚନା କରିବାକୁ ଲାଗିଲେ

ମନ୍ତ୍ରୀ ॥ ଦରବାରରୁ ଆସନ, ସିଂହାସନ ଆଉ ରାଣୀ ଚାଲିଗଲେ ।

ସେନାପତି ॥ ଆଚ୍ଛା ରାଜା ତ ଆମକୁ କହିଗଲେନି, ଆମେ କ'ଣ କରିବା ?

ମାଧବ ॥ ବୋଧହୁଏ ଅନ୍ୟ ଆଦେଶ ପର୍ଯ୍ୟନ୍ତ ଆମକୁ ଏଇଠି ରହିବାକୁ ପଡ଼ିବ ।

କିଟୁଆଳ ॥ ଆଜି ଯଦି ଆଉ କେହି ସୈନିକ ମରନ୍ତି, ତା'ହେଲେ ମୁଁ କ'ଣ କରିବି ?

ସେନାପତି ॥ ସେମାନଙ୍କୁ ସେମିତି ଛାଡ଼ି ଦବ ।

କିଟୁଆଳ ॥ ସେ ଗୁଡ଼ାକ ତ ଶବ । ମରିଗଲେ ପଚିଯାଏ । ପଚିଗଲେ ଗନ୍ଧାଏ ।

ମାଧବ ॥ ହଁ, ଏକ୍ଷଣି ଗନ୍ଧ ହବ ।

ମନ୍ତ୍ରୀ ॥ ରାଜା ଯେତେବେଳେ କିଛି ଆଦେଶ ଦେଇ ନାହାନ୍ତି, ସେଗୁଡ଼ାକ ସେମିତି ପଡ଼ିଥିବ ।

କିଟୁଆଳ ॥ ତା' ହେଲେ ବର୍ତ୍ତମାନ କ'ଣ କରାଯିବ ?

ମନ୍ତ୍ରୀ ॥ ଠିକ୍ କଥା, ରାଜାଙ୍କ ଆଦେଶ, ହାତରେ କିଛି କାମ ନଥିଲେ ଜାତୀୟ ସଂଗୀତ ବୋଲାଯିବ ।

ସେନାପତି ॥ ତା' ହେଲେ ସେଇ ଜାତୀୟ ସଂଗୀତ ବୋଲାଯାଉ !

ସେମାନେ ଜାତୀୟ ସଂଗୀତ ବୋଲିଲେ । ସେଇ ପାରମ୍ପରିକ ସ୍ୱର ଏବଂ ଶୈଳୀରେ । ମନ୍ତ୍ରୀ ବୋଲୁଥା'ନ୍ତି ଏବଂ ଅନ୍ୟମାନେ ପାଳି ଧରୁଥା'ନ୍ତି । କିନ୍ତୁ ବର୍ତ୍ତମାନ ବୋଲିବାରେ, ପୂର୍ବର ସେଇ ଗାମ୍ଭୀର୍ଯ୍ୟ ନଥିଲା । ବର୍ତ୍ତମାନ ସେମାନଙ୍କ ପାଖରେ ଏହା ଜାତୀୟ ସଂଗୀତ ନ ହୋଇ ଏକ ପ୍ରକାର ମନୋରଞ୍ଜନ କିମ୍ବା ଅବସର ବିନୋଦନ ସଂଗୀତ ରୂପେ ବ୍ୟବହାର ହେଉଥିଲା ।

ସେମାନେ ଗାଇ ଗାଇ ସିଏ ଯୋଡ଼ଟି ପାଖେ ବସିଗଲେ ।
କିଏ ମଞ୍ଚାକୁ ଆଉଜି, କିଏ ବା ପାହାଚ ଉପରେ ବସି,
ଗୀତ ଗାଉଥିଲେ ।

ଜାତୀୟ ସଂଗୀତ

ଓଟ ପରି ଜୀବ ନାହିଁରେ ଭାଇ ।
ଶାନ୍ତ ତୁ ପାଇବୁ ଯା' ଓଟ ହୋଇ ।
ପିଠିରେ କୁଜଟା କି ମନୋହର
ତୋ' କଟାହ ଆଖି ଭାରି ସୁନ୍ଦର ।
କଣ୍ଟା ଝୁଣ୍ଟା ସିଝ୍ଝୁ ଯା' ଖାଇଯା'
ତାତଲା ବାଲିରେ ଯା' ଶୋଇଯା' ।
ଓଟ ପରି ଜୀବ ନାହିଁରେ ଭାଇ
କହେ ରାଜା ସୁର ଯା' ଓଟ ହୋଇ ।

କିନ୍ତୁ ଗୀତ ଶେଷ ହୋଇ ପାରିଲାନି । ଦରବାରି ଭିତରକୁ ପଶି ଆସିଲା ନିରଂଜନ ଦେବୀର ହାତୀଝରି । ଏମାନଙ୍କର ଗୀତ ବନ୍ଦ ହୋଇଗଲେ । ପ୍ରଥମେ ଏମାନଙ୍କୁ ସିଏ ଯୋଡ଼ଟି ବସିଥିଲେ ସେଇଠୁ ସେମାନଙ୍କୁ ଅନେଇଲେ । ପ୍ରଥମେ ବିସ୍ମୟ, ତା'ପରେ କୌତୂହଳ । ନିରଂଜନ ତ ଭେଲକା ମାରିଲାଭଳିଆ ଘୂରିଘୂରି ଏମାନଙ୍କୁ ଦେଖୁଥିଲା । ଏମାନେ ତାଙ୍କ ଆପଣା ଜାବାକୁ ଛାଡ଼ି ନିରଂଜନ ପାଖକୁ ଆସିଲେ । ତାକୁ ଶୁଙ୍ଘିବାକୁ ଦେଖି ଗଲେ । ନିରଂଜନକୁ, ଦେବୀକୁ ଭଲେଇ ଦେଖିଲେ । ଏମିତିଆ ଦୁଇଟି ଅଦ୍ଭୁତ ଜନ୍ତୁ ଆଗରୁ ସେମିତି ସେମାନେ ଦେଖି ନଥିଲେ । ସେମାନେ ସେ' ଦୁଇ-ଜଣଙ୍କ ଗୋଡ଼ ପାଖରେ ଘୂରିବାକୁ ଲାଗିଲେ । ଏ ଅଦ୍ଭୁତ ଜୀବ ଦୁଇଟିଙ୍କୁ ଦେଖି ତାଙ୍କୁ ହସ ଲାଗୁଥିଲା । ସେମାନେ ହସି ଉଠିଲେ, ପ୍ରଥମେ ଧୀରେ, ତା' ପରେ ତାହା ଏକ ସମ୍ମିଳିତ ଅଟ୍ଟହାସ୍ୟରେ ପରିଣତ ହେଲା ।

ନିରଂଜନ ସେମାନଙ୍କର ଏ ଅଟ୍ଟହାସ୍ୟ ସହ୍ୟ କରି
ପାରିଲେନି । ଖୁବ୍ ଜୋର ଗଳାରେ, ଏମାନଙ୍କ ହସକୁ
ଦବେଇ ସେ କହିଲା,

ନିରଂଜନ ॥ ହସୁଚ କାହିଁକି ? ମୁଁ ପରା ନିରଂଜନ !

ଏମାନଙ୍କ ହସ ସିନା ବନ୍ଦ ହୋଇଗଲା, ହେଲେ
ମୁହଁରୁ ବିଦ୍ରୁପର ଚିହ୍ନ ଲିଭିଲା ନାହିଁ । ଏମାନେ
ନିରଂଜନ କଏ, ନିରଂଜନର ମାନେ କଣ ସେକଥା
ବୁଝିଲେ ନାହିଁ । ମନ୍ତ୍ରୀ ତେଣୁ କହିଲେ,

ମନ୍ତ୍ରୀ ॥ ଯା' ପଳା ଏଠୁ ।

ନିରଂଜନ ॥ କାହିଁକି ?

ମନ୍ତ୍ରୀ ॥ ଏଇଟା ଓଟମୁହାଁ ରାଜ୍ୟ ।

ସେନାପତି ॥ ଆମେ ସବୁ ଔଟିକ ।

କଟୁଆଲ ॥ ଆମ ରଜାଙ୍କୁ ଛାଡ଼ିଦେଲେ, ଆଉ କାହାର ତମ ପରି ମୁହଁ
ନାହିଁ ।

ସାଧବ ॥ ମଣିଷ ମୁହଁମାନଙ୍କୁ ରାଜା ଭାରି ଘୃଣା କରନ୍ତି ।

ମନ୍ତ୍ରୀ ॥ ଯା' ପଳା ଏଠୁ ।

ନିରଂଜନ ॥ ମୁଁ ଔଷଧ ଆଣିଚି ।

ମନ୍ତ୍ରୀ ॥ କି ଔଷଧ ?

ନିରଂଜନ ॥ ଏକା ପାନକେ ଓଟ ମୁହଁରୁ ମଣିଷ ମୁହଁ ।

ସେନାପତି ॥ କୋଉଠୁ ପାଇଲ ?

ନିରଂଜନ ଗପ କହିବାକୁ ଆରମ୍ଭ କଲା । ଠିକ୍
ଆଈମା କାହାଣୀ ପରି । ପିଲାମାନେ ଯେମିତି ଜାକି
ଜୁକି ବସି କାହାଣୀ ଶୁଣନ୍ତି, ଏମାନେ ସମସ୍ତେ ସେମିତି
ନିରଂଜନ ପାଖକୁ ଘୁଞ୍ଚି ଆସିଲେ । ମୁହଁରେ ଆଗ୍ରହ ଓ
ବ୍ୟଗ୍ରତା । ନିରଂଜନ ଗପ କହୁଥାଏ ।

ନିରଂଜନ ॥ ସେ ଗୋଟାଏ ଅଗନାଅଗନ ବନସ୍ତ । ସେଇଠି ଅଛି ଗୋଟାଏ ନନ୍ଥା ପର୍ବତ । ଏକପାଦିଆ ରାସ୍ତାରେ ପାହାଡ଼ ଉଠିଲେ ଦେଖିବ, ନଗାନଗି ହୋଇ ତିନୋଟି ତାଳଗଛ । ତାଳଗଛ ପାଖରେ ଗୁମ୍ଫା । ଗୁମ୍ଫା ଭିତରେ ବସିଥିଲି ।

ସମସ୍ତେ ॥ କିଏ ?

ନିରଂଜନ ॥ ( ଦେଖାଇକି ଦେଖେଇ ) ଔଷଧ । ଏଜା ପାନେକେ ଓଟ ମୁହାଁରୁ ମଣିଷ ମୁହାଁ ।

ଗପ ଶୁଣିବାର ନିଶା ଏମାନଙ୍କର କଟିଗଲା । ପୁଣି ସେଇ ଅବିଶ୍ୱାସ ଏବଂ ନିରଂଜନ ଆସିବାର ବିସ୍ମୟ ଏମାନଙ୍କୁ ଗ୍ରାସ କରି ବସିଲା । ଏମାନେ ନିରଂଜନ ପାଖରୁ ପୁଣି ଘୁଞ୍ଚି ଆସିଲେ ସେନାପତିଙ୍କ କଥାରେ । ସେନାପତି କହିଲେ,

ସେନାପତି ॥ ମିଛ କଥା । ଆମ ରାଜା କହିଚନ୍ତି, ଓଟ ମୁହାଁ ହବା ଭଲ ।

ସମସ୍ତେ ॥ ହଁ ଭଲ, ଖାଲି ଭଲ ।

ନିରଂଜନ ॥ ଭାଇମାନେ, ମୋତେ ଦେଖ, ମୁଁ ବି ତମ ଭଳି ଦିନେ ଓଟ-ମୁହାଁ ଥିଲି । ଜାତୀୟ ସଂଗୀତ ଗାଉଥିଲି ।

ମନ୍ତ୍ରୀ ॥ ତୁମକୁ କଣ ରୋଗ ହୋଇଥିଲା କି ? ନହେଲେ ଓଟମୁହାଁରୁ ମଣିଷ ମୁହାଁ କେମିତି ହେଲ ?

ନିରଂଜନ ॥ ରୋଗ ହୋଇଥିଲା, ଓଟମୁହାଁ ରୋଗ । ଔଷଧ ଖାଇ ଭଲ ହୋଇଗଲି ।

ସେନାପତି ॥ କି ଔଷଧ ?

ନିରଂଜନ ॥ ( ଦେଖାଇକି ଦେଖେଇ ) ଏଇ । ଜାରି ମନ୍ତ୍ରର ରଖିତ । ଛୁଇଁ ଦେଲେ ରୋଗ ଭଲ । ଓଟ ମୁହାଁରୁ ମଣିଷ ମୁହାଁ ।

ମନ୍ତ୍ରୀ ॥ କଉ, କାହିଁକି ମଣିଷ ମୁହାଁ ହବ ? ଆମେ ତ ବେଶ୍ ଅଛୁଁ । ଆମ ରାଜା ଖାଲି ଭଲ ।

ନିରଂଜନ ॥ ମଣିଷ ମୁହଁା ହେବାର ମଜା ପାଇନ, ସେଇଥି ପାଇଁ କହୁଚ ।

ସେନାପତିଙ୍କର କେମିତି ସନ୍ଦେହ ହେଲା । ଏ ଲୋକଟାର ଗ୍ଭଲଚଲନ, ସାଙ୍ଗରେ ଗୋଟାଏ ସ୍ତ୍ରୀ ଲୋକ, ତାଙ୍କୁ କେମିତି କେମିତି ଲଗିଲା । ସେ ଅନ୍ୟ ସମସ୍ତଙ୍କୁ ଇଙ୍ଗିତରେ ଗୋଟାଏ ପାଖକୁ ଡାକି ନେଇ ସେମାନଙ୍କ ସାଙ୍ଗରେ ମନ୍ତ୍ରଣା କରିବାକୁ ଲଗିଲେ,

ସେନାପତି ॥ ଇଏ କୋଉ ଅନ୍ୟ ଦେଶର ଗୁପ୍ତଚର ।

ମନ୍ତ୍ରୀ ॥ ଆମ ରାଜା ଠିକ୍ କହୁଥିଲେ । ଆମର ସୁନ୍ଦର ଓଟମୁହଁ ଅନ୍ୟ ରାଜ୍ୟର ଲୋକେ ସହି ପାରୁ ନାହାନ୍ତି । ତେଣୁ···

କଟୁଆଳ ॥ ତେଣୁ ତାକୁ ପଠେଇଚନ୍ତି, କେମିତି ଖଞ୍ଜି କରି, ପଟେଇ ପାଟେଇ ଓଟମୁହଁା ହବାର ସୂତ୍ର ପାଇଯିବ ।

ସାଧବ ॥ ଆଚ୍ଛା, ରାଜାଙ୍କୁ ଖବରଟା ଦେଇଦେଲେ କେମିତି ହୁଅନ୍ତା ?

କଟୁଆଳ ॥ ମଣିଷ ମୁହଁା ଧରେଇ ଦେଲେ, ପୁରସ୍କାର ମିଳିବ ବୋଲି ତ ରାଜା ଘୋଷଣା କରିଚନ୍ତି ।

ସାଧବ ॥ ଠିକ୍ କହିଚ, କିଛି ପୁରସ୍କାର ମିଳି ଯା'ନ୍ତା—

କଟୁଆଳ ॥ ତା' ହେଲେ ଖବରଟା ମୁଁ ଦେଇ ଦଉଚି ।

ସାଧବ ॥ ନାଇଁ, ମୋର କିଛି ଟଙ୍କା ଦରକାର । ମୁଁ ଦେବି ।

କଟୁଆଳ ॥ କଓ, ଟଙ୍କା କାହାର ଦରକାର ନାହିଁ ? ମୁଁ ଖବର ଦେବି ।

ସାଧବ ॥ ନାଇଁ, ମୁଁ ଦେବି ।

କଟୁଆଳ ॥ ମୁଁ ଦେବି ।

ସାଧବ ॥ ମୁଁ ।

କଟୁଆଳ ॥ ନାଇଁ ମୁଁ ।

ସାଧବ ॥ ଅଲବତ୍ ମୁଁ ।

କଣ୍ଟୁଆଲ ॥ ସାବଧାନ, ମୁଁ ।

ମନ୍ତ୍ରୀ ॥ ଆଃ !

ମନ୍ତ୍ରୀ ତ ପ୍ରଥମରୁ ବିବ୍ରତ ଥିଲେ । ଏ କ୍ଷେତ୍ରରେ କ'ଣ କରିବା ଉଚିତ କିଛି ବୁଝି ପାରୁ ନଥିଲେ । ଫେର୍ କଣ୍ଟୁଆଲ ଆଉ ସାଧବଙ୍କର ଝଗଡ଼ା ତାଙ୍କୁ ଅଧିକ ବିରକ୍ତ କଲା । ତେଣୁ ସେ ପାଟି କରି ଉଠିଲେ (ଆଃ) । ମନ୍ତ୍ରୀଙ୍କ ପାଟିରେ ଏମାନଙ୍କର ଝଗଡ଼ା ବନ୍ଦ ହୋଇଗଲା । ମନ୍ତ୍ରୀ ନିରଂଜନ ଆଡ଼କୁ ଅନେଇଲେ । କ'ଣ କହିବେ ନକହିବେ, ଠିକ୍ କରିନପାରି, ହଠାତ୍ ଡାକ ଦେଲେ,

ମନ୍ତ୍ରୀ ॥ ଏଇ !

ନିରଂଜନ ॥ ମୋ' ନାଁ ନିରଂଜନ । ଆଉ ସ୍ତ୍ରୀ' ନାଁ ଦେବୀ ।

ମନ୍ତ୍ରୀ ॥ ହେଇ, ଫେର୍ ଗୋଟାଏ ନାଁ କହିଲଣି ।

ନିରଂଜନ ॥ କାହିଁକି ତମର କ'ଣ ନାଁ ନାହିଁ ?

ମନ୍ତ୍ରୀ ॥ ଅଛି । ମୁଁ ମନ୍ତ୍ରୀ ।

ସେନାପତି ॥ ମୁଁ ସେନାପତି ।

କଣ୍ଟୁଆଲ ॥ ମୁଁ କଣ୍ଟୁଆଲ ।

ସାଧବ ॥ ମୁଁ ସାଧବ ।

ନିରଂଜନ ॥ ଆଉ ଅନ୍ୟମାନେ ?

ମନ୍ତ୍ରୀ ॥ ଅଟିକ । ସୁବିଧା ପାଇଁ ଆମ ରାଜା ସେମାନଙ୍କୁ ସଂଖ୍ୟା ଦେଇ ଦେଇଛନ୍ତି । ଅଟିକ-୧, ଅଟିକ-୨, ଅଟିକ-୩, ଏମିତି, ଏମିତି ।

ନିରଂଜନ ॥ ଅଟିକ ?

ମନ୍ତ୍ରୀ ॥ ହଁ । ଅଟିକ । ରାଜା ସେ ନାଁ ଦେଇଛନ୍ତି ।

ନିରଂଜନ ॥ ହୁଁ । ବଡ଼ ଜବରଦସ୍ତ ରୋଗ । ଭଲ ହବାକୁ ବହୁତ ଦିନ ଲାଗିବ ।

ମନ୍ତ୍ରୀ ॥ ତମେ ଏଠୁ ଗଲ ।

ନିରଂଜନ ॥ କାହିଁକି ?

ମନ୍ତ୍ରୀ ॥ ଖ୍ୟାଉଁ ଖ୍ୟାଉଁ କରୁଚ । ଏଇଟିକି ସେର୍ ସାଙ୍ଗରେ ଆଣିଚ !

ନିରଂଜନ ॥ ତମର ପାଣିଚ ଆଣିଚ ।

ମନ୍ତ୍ରୀ ॥ ତମେତ ବେଶ୍ କଥା କହୁଚ, ସେ କନ୍ତୁ ଚୁପ୍ ଚୁପ୍ ।

ନିରଂଜନ ॥ ସେମାନେ ମୋତେ ଆଦେଶ ଦେଇଚନ୍ତି, କଥା କୁହେଇବାକୁ ପଡ଼ିବ ।

ମନ୍ତ୍ରୀ ॥ କଥା କହିଲେ ?

ନିରଂଜନ ॥ ଭେଳବାଜି ପର ସବୁ ଘଟିଯିବ । ତମେମାନେ ଆଜି 'ତମେ-ମାନେ' ହୋଇ ରହିବନି ।

ସେନାପତି ॥ ( ମନ୍ତ୍ରୀଙ୍କୁ ) ଲୋକଟା ପାଗଳ ।

ମନ୍ତ୍ରୀ ॥ ( ସେନାପତିଙ୍କୁ ) ଲୋକଟା ନହେବା କଥା କହୁଚି ।

କଣ୍ଟୁଆଳ ॥ ଜାଣିଚ, ଆମ ପୁରାଣରେ ଲେଖା ହୋଇଚ, ଆମେ ସବୁ ଭାଗ୍ୟବାନ । ଭଗବାନ ଆମ ରାଜାଙ୍କ ଉପରେ ସନ୍ତୁଷ୍ଟ ହୋଇ ତାଙ୍କ ପ୍ରଜାମାନଙ୍କୁ ଓଟମୁହାଁ କରି ଦେଇଚନ୍ତି ।

ମନ୍ତ୍ରୀ ॥ ଶାସ୍ତ୍ର କଥା ଇଏ । ମିଛ ହେବ କେମିତି ?

ନିରଂଜନ ॥ ଦୂର୍, ଦୂର୍ ! ଶାସ୍ତ୍ର କଥା ଶୁଣଉଚ ମୋତେ ? କଉ ତମ ଶାସ୍ତର ଭଣିତାରେ ପରା ତମ ରାଜାଙ୍କର ନାଁ ଅଛି !

ସେନାପତି ॥ ଶାସ୍ତ୍ର ରାଜା ଲେଖନ୍ତେନି, ଆଉ କ'ଣ ତମେ ଲେଖନ୍ତ ?

ନିରଂଜନ ॥ ହୁଁଃ ।

ନିରଂଜନ ଏମାନଙ୍କୁ ଭ୍ରୂକ୍ଷେପ ନକରି, ଦେହାକୁ ଧରି ଦରବାରରୁ ବାହାରେ ଯାଉଥିଲା । ମନ୍ତ୍ରୀ ଆତଙ୍କିତ ହୋଇ ପଡ଼ିଲେ । ପଚାରିଲେ,

ମନ୍ତ୍ରୀ ॥ କୁଆଡ଼େ ଯାଉଚ ?

ନିରଂଜନ ॥ ଜିଆମ ଭିତରଟା ବୁଲି ଦେଖିବ ।

ମନ୍ତ୍ରୀ ॥ ଧରା ପଡ଼ିଗଲ, ମୁଣ୍ଡକାଟ । ରାଜାଙ୍କ ଆଦେଶ, ତମ ଭଳିଆ ମଣିଷ ମୁଣ୍ଡା ମାନଙ୍କୁ ଦେଖିବା ମାତ୍ରେ ମୁଣ୍ଡକାଟ୍ ।

କଟୁଆଳ ॥ ଗୋଟାଏ ମୁଣ୍ଡର ଦାମ ଦଶହଜାର ସ୍ୱର୍ଣ୍ଣମୁଦ୍ରା ।

ସେନାପତି ॥ ନାଇଁ, ନାଇଁ । ତିରିଶ ହଜାର ।

ମନ୍ତ୍ରୀ ॥ ରାଜା ଅଯଥାରେ ଦାମ ବଢ଼େଇ ଦେଲେ ।

ମାଧବ ॥ ଜିନିଷ ପତ୍ରର ଦାମ ବଢ଼ୁଛି, ମୁଣ୍ଡର ଦାମ ବଢ଼ନ୍ତାନି ?

ନିରଂଜନ ॥ ତମ ରାଜା ଭୁଲ କଲେ । ଜିନିଷ ପତ୍ରର ଦାମ ବଢ଼ିଲେ ମୁଣ୍ଡର ଦାମ କମେ । ତୁମ ରାଜା କିଛି ଜାଣିନାହାନ୍ତି ।

ମାଧବ ॥ ଉଁଃ, ଭାରି ଜାଣିଲୁ ବାଲଟା । କହିଲୁ ଆମ ରାଜା କିଛି ଜାଣି ନାହାନ୍ତି ।

ମନ୍ତ୍ରୀ ॥ ହଉ । ତମେ ଏଠୁ ଯାଅ ।

ନିରଂଜନ ॥ ଆଚ୍ଛା, ଆପଣ ପରା ମନ୍ତ୍ରୀ ?

ମନ୍ତ୍ରୀ ॥ ହଁ ।

ନିରଂଜନ ॥ ଟିକିଏ ଏଠିକି ଆସିଲେ ।

ମନ୍ତ୍ରୀ ॥ କାହିଁକି ?

ନିରଂଜନ ॥ ଆହା, ଆସନ୍ତୁନା ! ଧରା ତ ପଡ଼ିଲିଣି, ମରିବି । ମରିବା ଆଗରୁ ଟିକିଏ ପରୀକ୍ଷା କରି ନିଏଁ । ଆସନ୍ତୁ ।

> ମନ୍ତ୍ରୀ ଠିକ୍ କରି ପାରୁ ନଥିଲେ କ'ଣ କରିବେ । ଏଣେ ଭୟ, ତେଣେ ଉତ୍କଣ୍ଠା ଆଉ ଆଗ୍ରହ । ନିରଂଜନ ଡାକରେ ଏତେ ଆକର୍ଷଣ ଥିଲା ଯେ, ତାକୁ ସେ ଉପେକ୍ଷା କରି ପାରୁ ନଥିଲେ । ତେଣୁ ଡରି ଡରି ତା' ପାଖକୁ ଗଲେ ।

ନିରଂଜନ ॥ ଟିକିଏ ଏ ଝିଅକୁ ଛୁଇଁଲେ !

ମନ୍ତ୍ରୀ ଚମକ ପଡ଼ିଲେ । କିଛି ଭୁଲ କରୁ ନାହାନ୍ତି ତ ?
ତେଣୁ ଡରି ଡରି ପଚାରିଲେ······

ମନ୍ତ୍ରୀ ॥ କାହିଁକି ?

ନିରଂଜନ ॥ ମୁଁ କହୁଚି ଟିକିଏ ଛୁଅନ୍ତୁ ନା !

ମନ୍ତ୍ରୀ ଅଗତ୍ୟା ଛୁଇଁବାକୁ ଯାଉଥିଲେ । ଦେଖୀକୁ ଛୁଇଁ-
ବାକୁ ଯାଉଚନ୍ତି, ମନରେ ଦ୍ୱିଧା ଏବଂ ଭୟ, ହଠାତ୍
ସେନାପତି ପାଟି କରି ଉଠିଲେ ।

ସେନାପତି ॥ ଖବରଦାର୍, ତାକୁ ଛୁଅଁ ନାହିଁ ।

ନିରଂଜନ ॥ ଆହା, ଛୁଇଁଲେ କ'ଣ ଜାତି ଚାଲିଯିବ ? ଛୁଅନ୍ତୁ ।

ସେନାପତି ॥ ସେ କାମ କରନି । ମହାରାଜାଙ୍କର ଆଦେଶ ନାହିଁ ।

କନ୍ଦୁଆଳ ॥ ଆମେ ଜାତି ଭିତରେ ଶ୍ରେଷ୍ଠ । ଭଗବାନ ଆମ ରାଜାଙ୍କୁ
ଗଢ଼ିଚନ୍ତି । ରାଜା ଆମକୁ ତିଆରି କରିଚନ୍ତି ।

ନିରଂଜନ ॥ ଆହା, ମୁଁ କହୁଚି । ଅନ୍ୟ କଥାରୁ କ'ଣ ପାଇବେ । ଛୁଅନ୍ତୁ ।

ଏତେ ବଳେଇବାରୁ ମନ୍ତ୍ରୀ ଆଉ ନିଜକୁ ସ୍ଥିର ରଖି
ପାରିଲେନି । 'ଯା' ହେବାର ହେବ' ଭାବି ସେ ଆଉ
କାହା ଆଡ଼କୁ ନଚାହିଁ ଦେଖୀକୁ ଛୁଇଁବାକୁ ଆଗେଇ
ଗଲେ । ନିରଂଜନ ମଧ୍ୟ ସ୍ତବ୍ଧ, କାରଣ କ'ଣ
ଘଟିପାରେ, ସେ ବିଷୟରେ ତା'ର ବି ଧାରଣା ନାହିଁ ।
ସେନାପତି ସାଧବ, କନ୍ଦୁଆଳ ବ୍ୟଗ୍ର ହୋଇ ଥରେ
ମନ୍ତ୍ରୀଙ୍କୁ, ଥରେ ଦେଖୀକୁ ଦେଖୁଥା'ନ୍ତି ।
ମନ୍ତ୍ରୀ ଯାଇ ଦେଖୀକୁ ଛୁଇଁ ଦେଲେ । ଆଉ ଛୁଇଁ ସାଙ୍ଗେ
ସାଙ୍ଗେ ତାଙ୍କ ଦେହ, ମନରେ ଯେମିତି ଗୋଟାଏ
ଶିହରଣ, ଗୋଟାଏ କମ୍ପନ ଜାତହେଲା । ତାଙ୍କ ଭିତରେ
ଏକ ଅପୂର୍ବ ରୂପାନ୍ତର ସଂଘଟିତ ହେଲା । ସେ ଯେମିତି
ନିଜକୁ ସ୍ପଷ୍ଟ ଦେଖିପାରୁଥିଲେ । ଆଖିରେ ପଲକ ପଡ଼ୁନଥିଲା

ଭିତରେ ଯେ ଏତେବଡ଼ ଗୋଟାଏ ବିପ୍ଳବ ଆରମ୍ଭ ହୋଇ
ଯାଇଛି, ସେକଥା ଉପରକୁ ଜଣାପଡୁ ନ ଥିଲା । ସେ
ଏକାବେଳେକେ ସମାହିତ ଭାବରେ କହିଲେ ।

ମନ୍ତ୍ରୀ ॥ କେତେ ଦିନ ଏମିତି ପଡ଼ିଥିବୁ ପରର ବୋଲକରା ହୋଇ !
କିଏ ତୋ'ର ରାଜା, ତୁ କାହାର ବା ମନ୍ତ୍ରୀ ?

ସେନାପତି, ସାଧବ, କଟୁଆଳ ଏମାନଙ୍କ ଅକଳଗୁଡ଼ୁମ୍ ।
ମନ୍ତ୍ରୀଙ୍କୁ ଯେମିତି ସେମାନେ ଚିହ୍ନିପାରୁ ନାହାନ୍ତି, ଇଏ
ଯେମିତି ଆଉ କିଏ ! ଶେଷ୍ରୁ ସେନାପତି ଆଗେଇ ଗଲେ
ମନ୍ତ୍ରୀ ଆଡ଼କୁ ଅନ୍ୟ କୌଣସି ଉପାୟ ନ ଦେଖି ।

ସେନାପତି ॥ ଇଏ କ'ଣ କହୁଛ ମନ୍ତ୍ରୀ ! ତୁମେ ତ ରାଜାଙ୍କ ବିରୁଦ୍ଧରେ
କହୁଛ । ମନ୍ତ୍ରୀ !

ସେନାପତି ମନ୍ତ୍ରୀଙ୍କୁ ଛୁଇଁ ଦେଲେ । ବାସ୍, ସେନାପତି ବି
ମନ୍ତ୍ରୀଙ୍କ ପରି କାବୁ । ତାଙ୍କ ହାତ ମନ୍ତ୍ରୀଙ୍କ କାନ୍ଧରେ, ଏବଂ
ସେ ଅନ୍ୟ କେହି ହୋଇଗଲେ । ନିଜକୁ ଧିକ୍କାର ଦେବାକୁ
ଲାଗିଲେ ।

ସେନାପତି ॥ କେତେଦିନ ଓଟ ମୁହଁ ବୋହି, ଏମିତି ବୁଲୁଥିବୁ ? ତୁ
ସେନାପତି, ତୋର ତରବାରୀ କାହିଁ ? ତୁ ରାଜାର ପାଦ
ଚାଟୁଚୁ !

ଖାଲି ମନ୍ତ୍ରୀ ସେନାପତି କାହିଁକି, ସାଧବ କଟୁଆଳ ବି ସେଇ
ଧନ୍ଦାରେ ଫସିଗଲେ । ଏମିତି ତାକ ତାକ ଯା'ନ୍ତି, ଆଉ
ଛୁଇଁଦେଲା ମାତେ ଲାଗି ଯା'ନ୍ତି । ତା'ପରେ ଆରମ୍ଭ
ହୋଇଯାଏ ଅବୋଲ ତାବୋଲ କଥା-ଯେମିତି,

କଟୁଆଳ ॥ ମନ୍ତ୍ରୀ ! ସେନାପତି ! ( ସେନାପତିକୁ ଛୁଇଁଦେଲା, ତା'ପରେ )
ହାୟ ! ହାୟ ! ଶବଗୁଡ଼ାକ ପରି ଗନ୍ଧେଇଲେ ବି ସଂସାର
ଜାଣିବାର ଉପାୟ ନାହିଁ । ଏ ରାଜା ତୋତେ କିଣି ନେଇଛି ।
ତୁ ରାଜାର ଗୋଲାମ !

ସାଧବ ॥ ମନ୍ତ୍ରୀ, ସେନାପତି, କଟୁଆଳ ! କ'ଣ ଯ୍ୟାଙ୍ଗୁ ସ୍ୟାଙ୍ଗୁ ଗପୁଚ ?
( କଟୁଆଳକୁ ଯେମିତି ଛୁଇଁ ଦେଇଚ )
ହାୟ ! ହାୟ ! ରଜା ଆମକୁ ବାନ୍ଧି ରଖିଚ । ଏ ରଜାଟାକୁ ତୁ ମାରି ଦେ; ହାଣି ଦେ । ତୋ ଓଟ ମୁହଁ ଘରି ଅସୁନ୍ଦର !

ଯେମିତି ଚୁମ୍ବକ ଲୁହାକୁ ଟାଣେ, ଆଉ ଲୁହା ଚୁମ୍ବକ ଦେହରେ ଲଗିଲେ ଲୁହା ବି ରହି ଚୁମ୍ବକ ହୋଇଯାଏ, ସେମିତି ଦେଖା କାନ୍ଧରେ ମନ୍ତ୍ରୀର ହାତ, ମନ୍ତ୍ରୀ କାନ୍ଧରେ ସେନାପତିର, ସେନାପତି କାନ୍ଧରେ କଟୁଆଳର ଆଉ କଟୁଆଳ କାନ୍ଧରେ ସାଧବର ଏମିତି ପଛକୁ ପଛ ଠିଆ ହେଇଗଲେ, ଯେମିତି ଚେତା ଚବର କିଛୁ ନାହିଁ । ନିରଞ୍ଜନକୁ ଏସବୁ ଭେଲକି ଲଗିଲା ପରି ଲାଗୁଥାଏ । ସେ ହଠାତ୍ ଗୋଟାଏ ଗୀତ ଫାନ୍ଦି ବୋଲି ଦେଲା ।

## ନିରଂଜନର ଗୀତ

ଲଗିଲା ହଟ ଚମଟ ହୋ—
ଲଗିଲା ହଟ ଚମଟ ।
ଦେଖା ଆସିଲାରୁ, ରଜା ଉଆସର,
ଖୋଲିଲା କଂସା କବାଟ ହୋ
ଲଗିଲା ହଟ ଚମଟ ।
ତା' ଦେହକୁ ଛୁଇଁ, ପାଞ୍ଚ ମନ୍ତ୍ରୀଙ୍କର, ବୁଡ଼ିଗଲା ସିନା ଚେତା
ନିଜକୁ ଜାଣିଲେ, ରଜାକୁ ଚହ୍ନିଲେ, ଦୁନିଆଁ ଲଗିଲା ପିତା
ଓଟ ମୁହାଁଙ୍କର ଫିଟିଗଲା ପରି ମଣିଷ ହବାର ବାଟ ହୋ—
ଲଗିଲା ହଟ ଚମଟ ।

ମନ ଆନନ୍ଦରେ ତାଳମାରି ସେ ଗୀତ ଗାଇଲା । ଏମାନେ କିନ୍ତୁ ଭେଲକି ମାରିଲା ଭଳିଆ ଦେଖା ପଛରେ, କାନ୍ଧକୁ କାନ୍ଧ ଧରି ଠିଆ ହୋଇଥା'ନ୍ତି । କ'ଣ ଘଟୁଚି, କିଏ କ'ଣ କହୁଚି ସେଥିପ୍ରତି ହୋଷ୍ ନାହିଁ । ସେଇଠୁ ନିରଞ୍ଜନ

କ'ଣ କଲ ନା- ଏମାନଙ୍କ ଭୃଣପାଶରେ ତାଳ ମାରି ନାଚ
ନାଚ ସେଥିଏ ଭୁଲିଗଲ ।

ନିରଂଜନ ॥ ଲଗିଯା—ଯା' ଲଗିଯା, ଲଗିଯା'—ଯା' ଲଗିଯା' ।

ତା' ପରେ ଯାଇ ଦେବୀ ପାଖରେ ଠିଆ ହେଲ । ମୁହଁରେ
ବିସ୍ମୟ ଆଖିରେ ପୁଲକ । ଯେମିତ ଏ ଝିଅଟିର ଚେହେରା ମତ
ସେ ପ୍ରଥମ ଥର ପାଇଁ ଦେଖୁଚ । ଶେଷ୍କୁ ତାକୁ କହିଲ,

ନିରଂଜନ ॥ ତୋ'ର ଫେର ଏତେ ଗୁଣ ! ତୁ କଥା କହିଲେ ତ ରାଜ୍ୟଟା
ସାଂଗେ ସୁନା ପାଲଟି ଯା'ନ୍ତା !

ଏତେବେଳେକେ ସମସ୍ତେ ମୁହଁ ଖୋଲିଲେ । କିନ୍ତୁ
ସେମାନଙ୍କ ମୁହଁରେ ଅନ୍ୟ କଥା ।

ସମସ୍ତେ ॥ ଏ ରାଜାଠାରୁ ଆମେ ମୁକ୍ତ ହେଉଁ ।

ନିରଂଜନ ॥ ତା' ବେଳ ଆସିନି । ପ୍ରଥମେ ତାକୁ କଥା କୁହେଇବାକୁ
ପଡ଼ିବ ।

ନିରଂଜନ ଚିକିଏ ଜୋର୍ ଝଟେଇ ଦେବୀ କାନ୍ଧରୁ
ମନ୍ତ୍ରୀଙ୍କର ହାତଟା ଛଡ଼େଇ ଦେଇ, ଦେବୀକୁ ଚିକିଏ
ଘୁଞ୍ଚେଇ ଆଣିଲ । ମନ୍ତ୍ରୀଙ୍କର ହାତଟି ଦେବୀ କାନ୍ଧରୁ
ଯେମିତ ଖସି ଯାଇଚ, ଅନ୍ୟମାନଙ୍କର ହାତବି ସେମିତ
ଅନ୍ୟର କାନ୍ଧରୁ ଖସିଗଲ । ସେମାନେ ଚାଡ଼ ହୁଙ୍କି
ହେଲେ, ଯେମିତ ଏତେବେଳ ଯାଏ ଶୋଇ ପଡ଼ିଥିଲେ,
ଆଉ ଶୋଇ ଶୋଇ ଏମିତ ଗୋଟାଏ ସ୍ୱପ୍ନ ଦେଖୁଥିଲେ ।
ଚିକିଏ ସାଷ୍ଟାମ ହେଲା ପରେ ମନ୍ତ୍ରୀ ଦେବୀକୁ ଦେଖି
ନିରଂଜନକୁ ପଚାରିଲେ,

ମନ୍ତ୍ରୀ ॥ ଇଏ କଏ ?

ନିରଂଜନ ॥ ଦେବୀ ।

ମନ୍ତ୍ରୀ ॥ ଭାରି ନିଶା, ଏକାବେଳେକେ ବେହୋସ କରି ଦଉଚ ।

ସେନାପତି ॥ କ'ଣ ଘଟିଗଲା, ମୁଁ ତ କଛି ବୁଝି ପାରିଲିନି ।

ନିରଂଜନ ॥ ବୁଝିବ, ବୁଝିବ, ବେଳ ଆସୁ, ଠିକ୍ ବୁଝିବ ।

କଟୁଆଳ ॥ ଭାରି ବିପଦ । ରାଜା ଜାଣିଲେ, ଆଉ କଛି ବାକି ରଖିବେନି ।

ମାଧବ ॥ ଚାଲ୍ ପଳେଇବା ।

ମନ୍ତ୍ରୀ ॥ କୁଆଡ଼େ ?

କଟୁଆଳ ॥ କଛି ଜାଣିନୁ ବୋଲି କହି ଦବା !

ସେନାପତି ॥ ହଁ । ଏବେ ପଳେଇଯିବା ଭଲ । ରାଜା ଡକେଇଲେ ଯାଇ ଆସିବା ।

କଟୁଆଳ ॥ ମୋ'ର ତ ଡେର୍ କାମ । ମୁଁ ପୁଣି ସେଇ ମଣିଷ ମୁହାଁ ତିନି ଜଣଙ୍କୁ ଖୋଜିବାକୁ ଯିବି ।

ମନ୍ତ୍ରୀ ॥ ଚାଲ, ଚାଲ ସମସ୍ତେ । ( ଯାଉଁ ଯାଉଁ ଫେରିପଡ଼ି ନିରଂଜନକୁ ) ହେଇଟି ଶୁଣ ! ଆମେ ମଣିଷ ମୁହାଁ ହବାକୁ ଚାହୁଁନୁ । ମଣିଷ ମୁହାଁ ହବା ଭାରି ବିପଦ । ଆମ ମୁଣ୍ଡର ଦାମ ହେଇଯିବ ତିରିଶ ହଜାର ସ୍ୱର୍ଣ୍ଣ ମୁଦ୍ରା । ଆମ ବେକରୁ ମୁଣ୍ଡଟା ଅଲଗା ହେଇଯିବ । ଆଉ ତମେ ସେତେବେଳେ ବସି ମଜା ଦେଖୁଥିବ, ନାଇଁ ? ଚାଲ, ଚାଲ ସମସ୍ତେ ।

**ସେମାନେ ଚାଲିଗଲେ । ନିରଂଜନ ସେଇ ଦରବାର ଭିତରେ ଦେଖିବାକୁ ଧରି ଠିଆ ହୋଇଥାଏ । ଆବା କାବା ହୋଇ ଚାରି ଅଡ଼କୁ ଅନାଉ ଥାଏ । ତାକୁ ଭାରି ବିକଳ ଲାଗୁଥାଏ ।**

ନିରଂଜନ ॥ ବାପ୍, ମୋତେ ସମସ୍ତେ ଛାଡ଼ିଦେଇ ଯିଏ ଯୁଆଡ଼େ ଚାଲିଗଲେ । ମୁଁ ଏଇ ବୋବା ଝିଅଟାକୁ ଧରି କୁଆଡ଼େ ଯିବି ? ଏକେତ ଅଚିହ୍ନା ଜାଗା । ସେଥିରେ ପୁଣି ରଜା ଉଆସ । ଧରା ପଡ଼ିଗଲି ତ ଆଉ ରକ୍ଷା ନାହିଁ । ଦେଖିବା, କ'ଣ ହଉଛି । ଆ' ଝିଅ !

ଦେବୀର ହାତ ଧରି ନିରଂଜନ ବୁଲିବାକୁ ଲାଗିଲା । ବୁଲୁଛି ଯେ ବୁଲୁଛି । କେତେ ଖୋଲା ଘର, ମେଲା ଘର, ଗମ୍ଭୀର ଘର, କେତେ ବାରଣ୍ଡା, ଅଳନ୍ଦ, ଭିତର ମେଲା, ବାହାର ମେଲା, କେତେ ଗଳ୍ପ ଘର, ସାଜଘର, ଶୋଇବା ଘର, ବସିବା ଘର ପାରି ହୋଇ ବୁଲୁଛି । ତାର କଳନା ନାହିଁ । କୋଉଠି ଲୋକ ହାଉଯାଉ ହେଉଛନ୍ତି ତ କୋଉଠି କେହି ନାହାନ୍ତି । କୋଉଠି ପାଇକ ତରବାରି ପକଉଛି ତ କୋଉଠି ବାଜୁଣିଆ ବାଜୁଛି, ଗାଉଣିଆ ଗାଉଛି, ନାଚୁଣିଆ ନାଚୁଛି । କେହି ଆସିଲେ ନିରଂଜନ ଲୁଚି ଯାଉଛି, ବୁଲିଗଲେ ବାହାରି ପଡୁଛି ଫେରି ଆସୁଛି ଏମିତି ଯାଇ ଯାଇ ହଠାତ୍ ସେ ଗୋଟାଏ ମହଲ ଭିତରେ ପଶିଗଲା । କାହାର ଗୋଟାଏ ପାଟି ଶୁଣି, ଦୁଆର ଖୋଲା ଦେଖି ଗୋଟାଏ ଘର ଭିତରକୁ ପଶିଗଲା । ସେ ଘରଟାର ସାଜସଜ୍ଜା ଦେଖି ତା' ହାଲୁକ ଶୁଖିଗଲା ।

ନିରଂଜନ ॥ ଇଏ ପୁଣି କୋଉ ଜାଗାରେ ବାବା ! ଆଜ୍ଞା ତୁ କ'ଣ ସତରେ କଥା କହିବୁନି ? ନିଜେ ନିଜେ କେତେ କଥା କହିବି ? ଦେଖୁଚୁତ, କି ବିଷମ ସଂକଟରେ ପଡ଼ିଲିଣି, ଏତିକବେଳେ ତୁ ଯଦି ଚୁପ୍ ଚାପ୍ ରହୁ, ମୁଁ କାହା ସାଙ୍ଗରେ କଥା କହିବି !

କିନ୍ତୁ କିଏ କାହା କଥା ଶୁଣେ ! ଦେବୀର ହାତଟି ନିରଂଜନ ଯେମିତି ଛାଡ଼ି ଦେଇଛି ସେ ପୁଣି ତା' ଠିଆ ହେବା ଜାଗାରେ ବସି ପଡ଼ି ଆପଣା ମନକୁ ଚଟାଣ ଉପରେ ଗାର ଟାଣିବାକୁ ଲାଗିଲା । ନିରଂଜନ ଭାରି ବିରକ୍ତି ଗଲା ।

ନିରଂଜନ ॥ ବାସ୍, ତୁ ତୋ' କାମ ଆରମ୍ଭ କରି ଦେଲୁ । ମୁଁ କ'ଣ କରିବି ? ସେମାନଙ୍କ କଥାରେ ପଡ଼ି କାହିଁକି ସେ ତୋତେ ସାଙ୍ଗରେ ଆଣିଲି !

ଏଇ ସମୟରେ କାହାର ଆସିବାର ଶବ୍ଦ ଶୁଣାଗଲା । ପାଦର ଶବ୍ଦ ନୁହେଁ, ଘୁଙ୍ଗୁରର ଶବ୍ଦ । ନିରଂଜନ ଭୟ

ପାଇଗଲା । କ'ଣ କରିବ ବୋଲି କିଛି ସ୍ଥିର କରିପାରି, ପଛପଟେ ଲୁଚିଗଲା । ଭିତରକୁ ଆସିଲେ ମହାରାଣୀ ପୁତ୍ତଳିକା । ସେ ଆସି ଦେବୀ ଆଗରେ ଠିଆ ହେଲେ । କିନ୍ତୁ ସେ ଏତେ ଅନ୍ୟମନସ୍କ ଥିଲେ ବି ଆଖି ଆଗରେ ଦେବୀ ଥିଲେ ବି ତାଙ୍କୁ ଦେଖିବି ଦେଖିଲେ ନାହିଁ । ସେ ଆସିଥିଲେ, କିନ୍ତୁ କ'ଣ ସବୁ ନେଉଛି ଯାଉଥିଲେ । ନିରଂଜନ ଦେବୀ ପଛରୁ ମୁହଁ କାଢ଼ି ହଠାତ୍ ପଚାରି ଦେଲା,

ନିରଂଜନ ॥ କିଏ ?

ରାଣୀ ଯାଉ ଯାଉ ଅଟକି ଗଲେ । କିନ୍ତୁ ବୁଲି ଅନେଇଲେ ନାହିଁ । କଣ୍ଢେଇର ଯେପରି ପଛକୁ ଅନେଇବା ସମ୍ଭବ ନୁହେଁ, ବୋଧହୁଏ ସେଇପରି । ସେ ସେଇ ଠିଆ ହବା ଜାଗାରୁ ଉତ୍ତର ଦେଲେ ।

ରାଣୀ ॥ ପୁତ୍ତଳିକା ।

ନିରଂଜନ ॥ ଏଇଟା କାହା କୋଠରୀ ?

ରାଣୀ ॥ ପୁତ୍ତଳିକା ।

ନିରଂଜନ ॥ ମୁଁ କାହା ସାଙ୍ଗରେ କଥା କହୁଛି ?

ରାଣୀ ॥ ପୁତ୍ତଳିକା ।

ନିରଂଜନ ॥ ଆପଣ ରଜାଙ୍କର କ'ଣ ହୁଅନ୍ତି ?

ରାଣୀ ॥ ପୁତ୍ତଳିକା ।

ନିରଂଜନ ॥ ତା' ମାନେ ମହରଗରୁ ଯାଇ କାନ୍ତାରରେ ! ସାଙ୍ଗରେ ତି ବୋବା ଝିଅ । ଆଉ ସାମନାରେ କିଏ ଜଣେ, ଯିଏ ଖାଲି ଗୋଟିଏ ଶବ୍ଦ କହୁଛି, ପୁତ୍ତଳିକା ।

ରାଣୀ ॥ ପୁତ୍ତଳିକା ।

ନିରଂଜନ ॥ ରଜା ତ ନାହାନ୍ତି । ଅନ୍ୟ ଶବ୍ଦ କହୁ ନାହାନ୍ତି ? ମୁଁ କାହାକୁ କହିବିନି ।

ରାଣୀ ॥ ପୁତ୍ତଳିକା ।

ନିରଂଜନ ବିସ୍ମିତ ହେଲା । ଦେବୀ ପାଖରୁ ସେ ରାଣୀଙ୍କ ପାଖକୁ ଚାଲି ଆସିଲା ଆଉ ଟିକିଏ ଭଲ କରି ନିରୀକ୍ଷଣ କଲା ରାଣୀଙ୍କୁ । ରାଣୀଙ୍କର ସେଇ ମୁହଁ । କୌଣସି ଏକାନ୍ତର ହୋଇନି ।

ନିରଂଜନ ॥ ଆପଣ କ'ଣ ମୋ'ଭଳି —ଆଉ କୋଉଠୁ ଆସିଚନ୍ତି ? ଆପଣ ତ ଓଟମୁହାଁ ନୁହନ୍ତି !

ରାଣୀ ॥ ପୁତ୍ତଳିକା ।

ନିରଂଜନ ॥ କୋଉଠୁ ସେ ଔଷଧ ପାଇଲେ, ଯିଏ ଆପଣଙ୍କୁ ଓଟ ମୁହଁରୁ ମଣିଷ ମୁହଁ କଲା ?

ରାଣୀ ॥ ପୁତ୍ତଳିକା ।

ନିରଂଜନ ॥ ନାଁ, ଆଉ ହବନି ।

ନିରଂଜନ ଅଧୈର୍ଯ୍ୟ ହୋଇ ଉଠିଲା । ଏଠିକାର ସମସ୍ତେ ଯେପରି ତାକୁ କମ୍ଭୁତ କିମାକାର ଲାଗୁଥିଲେ । ଏ ପାଖ ସେ ପାଖ ହୋଇ ସେ ଚିନ୍ତା କଲା କ'ଣ କରିବ । ତା' ପରେ ଗୋଟାଏ ବୁଦ୍ଧି ତା' ମୁଣ୍ଡକୁ ଜୁଟିଗଲା । ଦେବୀ ତା' ଜାଗାରେ ବସି ଗୀତ ଗାଉଥିଲା, ସେଇଠୁ ତାକୁ ହାତ ଧରି ରାଣୀଙ୍କ ପାଖକୁ ନେଇଆସିଲା । ତା'ପରେ ରାଣୀଙ୍କ କାନ୍ଧରେ ଦେବୀର ହାତକୁ ନେଇ ରଖିଲା ।

ଦେବୀର ସ୍ପର୍ଶ ପାଇ ରାଣୀ ଚଞ୍ଚଳ ହେଲେ । ତାଙ୍କ ଦେହରେ ମୁଣ୍ଡରେ ଶିହରଣ ଏବଂ କମ୍ପନ ଜାତ ହେଲା । ମନେ ହେଲା ଯେମିତ କଣ୍ଢେଇଟିଏ ଦେବୀର ଛୁଆଁ ବାଜି ମଣିଷକୁ ରୂପାନ୍ତରିତ ହେଉଛି । ସେ ଏକା ନିଃଶ୍ୱାସକେ —କହି ଯିବାକୁ ଲାଗିଲେ,

ରାଣୀ ॥ ଆଃ, କେତେଦିନ ନଷ୍ଟ ହୋଇଗଲା । କଣ୍ଢେଇ ପରି ପରର ଆଦେଶରେ, ଅନ୍ୟର ନିର୍ଦ୍ଦେଶରେ କେତେ ଦିନ ମୁଁ

ନାଚଲି ! ମୋ'ର କେତେ ଆଶା ଥିଲା, ସ୍ୱପ୍ନ ଥିଲା । ବଂଚିବାର କି ବିଚିତ୍ର ଅନୁଭୂତି ଥିଲା । ଜୀବନର ସ୍ୱାଦ ଚାଖିବା ପାଇଁ କେତେ ଉତ୍କଣ୍ଠା ଥିଲା । କୁଆଡ଼େ ଗଲା ? କୁଆଡ଼େ ଗଲା, ସେ ଦିନଗୁଡ଼ାକ !

ନିରଂଜନ ॥ ଆପଣ କିଏ ?

ରାଣୀ ॥ ପଥର ଘରେ ବନ୍ଦିନୀ ଏକ ନାରୀ ।

ନିରଂଜନ ॥ ଆପଣ ସେ ଗୁମ୍ଫା ଦେଖିଚନ୍ତି ?

ରାଣୀ ॥ ଦେଖିନି, ଶୁଣିଚି । ସେଠି କିଏ ଜଣେ ତପସ୍ୟା କରୁଚନ୍ତି । ଏ ପଥର ଘର ଫାଟିବ । ଲୁହା କବାଟ ଭାଙ୍ଗିବ । ମୁଁ ମୁକ୍ତ ହେବି ।

ନିରଂଜନ ॥ ସେମାନଙ୍କର ମସ୍ତକର ମୂଲ୍ୟ ବର୍ତ୍ତମାନ କୋଡ଼ିଏ ତିରିଶ ହଜାର ସ୍ୱର୍ଣ୍ଣମୁଦ୍ରା ?

ରାଣୀ ॥ ଜୀବିତ ନା ମୃତ ।

ନିରଂଜନ ॥ ଆପଣ କ'ଣ ବଞ୍ଚିବାକୁ ଚାହାନ୍ତି ?

ରାଣୀ ॥ ବଞ୍ଚିବି !

ନିରଂଜନ ॥ ଏ ରାଜା ?

ରାଣୀ ॥ ସମସ୍ତଙ୍କର ଗଳା ଚିପି ଦିଆଯାଇଚି । କହିବାର ଭାଷା କାଢ଼ି ନିଆ ଯାଇଚି । ଏଠି ହସରେ ଆନନ୍ଦ ନାହିଁ, କାନ୍ଦିବାରେ ଯନ୍ତ୍ରଣା ନାହିଁ । ହସ ନିର୍ଜୀବ ଶବ୍ଦ । କାନ୍ଦିବା ଖାଲି ଶବ୍ଦହୀନ ଲୁହ ।

> ନିରଂଜନ ଦେଖାକୁ ରାଣୀଙ୍କ ଠାରୁ ଅଲଗା କରି ନେଲା । ରାଣୀ ପୁଣି ସେଇ ପୁରୁଣା ଅବସ୍ଥାକୁ ଫେରିଗଲେ, ଯଦିଓ ଝଡ଼ ଯାହା ଉଠିଥିଲା, ସେ ତଥାପି ଥମି ନଥିଲା ।

ନିରଂଜନ ॥ ଆପଣ କିଏ ?

ରାଣୀ ॥ ପୁତ୍ତଳିକା ।

ନିରଂଜନ ॥ ବାଃ, ଇଏତ ବଡ଼ିଆ ଖେଳବାଜି ! ତୁ ଏତେ ସୁନ୍ଦର ଜାଣିଚୁ ? ସେମାନେ ଠିକ୍ କହୁନଥିଲେ !

ରାଣୀ ସ୍ଥିର ରହି ପାରୁ ନଥିଲେ, ଆଉ ଥରେ ଦେବୀଙ୍କୁ ଛୁଇଁବା ପାଇଁ ସେ ଦେବୀ ଆଡ଼କୁ ହାତ ପ୍ରସାରିତ କରି ଆଗେଇ ଆସିଲେ । କିନ୍ତୁ ନିରଂଜନ ତାଙ୍କୁ ବାଧା ଦେଲା । ରାଣୀ ନିଜକୁ ସମ୍ଭାଳି ନେଇ ପଚାରିଲେ,

ରାଣୀ ॥ କିଏ ସେ, ଯିଏ ମୂର୍ତ୍ତିଙ୍କ ପାଇଁ ମୋତେ ମୁକ୍ତିର ନିଃଶ୍ୱାସ ଦେଲା ?

ନିରଂଜନ ॥ ଦେବୀ !

ରାଣୀ ॥ ତମେ କ'ଣ ତା'ପାଇଁ କଥା କୁହ ?

ନିରଂଜନ ॥ ହଁ । ଠିକ୍ ଯେମିତି ଆପଣ ଆଉ କାହା ଆଦେଶରେ କଣ୍ଠେଇ ।

ରାଣୀ ॥ ହଁ । ଠିକ୍ ଯେମିତି ପ୍ରଜାମାନେ ଆଉ କାହାର ଇଚ୍ଛାରେ ଓଠ ମୁହାଁ ।

ନିରଂଜନ ॥ ତାକୁ ମୁଁ ଆଣିଚି କଥା କୁହେଇବା ପାଇଁ ।

ରାଣୀ ॥ ସେ ଯଦି କଥା କୁହେ, କ'ଣ କହିବ ?

ନିରଂଜନ ॥ ମୁଁ ଜାଣିନି । ସେମାନେ ମୋ ବେକରେ ତାକୁ ବାନ୍ଧିଦେଲେ । ମୁଁ ରାଜଧାନୀକୁ ଆସିଲି । ମୋତେ ଦେଖି ଲୋକମାନେ କିଏ କୁଆଡ଼େ ପଳେଇଲେ । କବାଟକିଳା ଘର ଭିତରେ ଲୁଚିଲେ ।

ରାଣୀ ॥ ରାଜାଙ୍କ ଆଦେଶ, ମୁଁ ପୁତ୍ତଳିକା ।

ଏଇ ସମୟରେ ତୂର୍ଯ୍ୟନାଦ ଏବଂ ବୀର କାହାଳୀ ଇତ୍ୟାଦି ବାଜି ଉଠିଲା, ରାଜାଙ୍କ ଆସିବାର ସଂକେତ । ଘୋଷକ ଘୋଷଣା କଲା । ରାଣୀ ବିଚଳିତ ହୋଇ ପଡ଼ିଲେ, ରାଜାଙ୍କ ଆସିବାର ସମ୍ବାଦ ପାଇ ।

ଘୋଷକ ॥ ମହାମହିମ, ରାଜାଧିରାଜ ସୁରେନ୍ଦ୍ର ପ୍ରତାପ ରାଣୀ ଅନ୍ତଃପୁରକୁ ବଜେ ।

ରାଣୀ ॥ ରାଜା ଆସୁଚନ୍ତି ।

ନିରଂଜନ ॥ ଆସନ୍ତୁ ।

ରାଣୀ ॥ ତୁମକୁ ଦେଖିବେ ।

ନିରଂଜନ ॥ ଦେଖନ୍ତୁ ।

ରାଣୀ ॥ ଏଇ ଝିଅଟିକୁ ଦେଖିବେ ।

ନିରଂଜନ ॥ ଭଲ ହବ । ଗୋଟାଏ କିଛି ଘଟିଯିବ ।

ରାଣୀ ॥ ଗୋଟାଏ ଆଶା, ଫୁଲ ହୋଇ ନ ଫୁଟୁଣୁ ଝରିଯିବ ?

ନିରଂଜନ ॥ ତା' ହେଲେ ଦେବୀ ଆପଣଙ୍କୁ କିଛି ଆଶା ଦେଇଚି ?

ରାଣୀ ॥ ଲୁଚ ଯାଅ ।

ନିରଂଜନ ॥ କୋଉଠି ?

ରାଣୀ ॥ ଯୋଉଠି ପାରୁଚ ।

ନିରଂଜନ ॥ କାହିଁକି ?

ରାଣୀ ॥ ତୁମକୁ ମୋ'ର ଦରକାର, ଝିଅଟି ଦରକାର ।

ନିରଂଜନ ॥ ଲୁଚିବି କାହିଁକି ?

ରାଣୀ ॥ ରାଜାଙ୍କ ଠାରୁ ବଞ୍ଚିବାକୁ ।

ଏଇ ସମୟରେ ରାଜାଙ୍କର ପାଟି ଶୁଭିଲା । କଥା ନୁହେଁ ତ, ଯେମିତି ଗର୍ଜନ କରି ଉଠିଲେ । ତାଙ୍କୁ ଦେଖା ଯାଉ ନଥିଲା । ସେ ହୁଏତ ଭିତରେ କୋଉଠି ଥାଇ ଗର୍ଜନ କରୁଥିଲେ ।

ରାଜା ॥ (ଭିତରୁ) ହଁ, ଅନ୍ତଃପୁରରେ କେହି ଜଣେ ଅଛି । କିଏ ସେ ?

ରାଣୀ ॥ (ଖୁବ୍ ଡରିଗଲେ) ହେଇ, ରାଜା ଆସିଲେ ।

ନିରଂଜନ ॥ ଆମକୁ ତା' ହେଲେ କୋଉଠି ଲୁଚେଇ ଦିଅନ୍ତୁ ।

ରାଣୀ ॥ ହଁ, ଆସ ।

ରାଣୀ ଦେବୀ ଓ ନିରଂଜନକୁ ନେଇ ଦୁଇଟି ଜାଗାରେ ଲୁଚେଇ ଦେଲେ । ନିରଂଜନ ଏମିତି ଜାଗାରେ ଲୁଚିଲା, ଯୋଉଠୁ ସେ ରଜାଙ୍କୁ ଭଲ ଭାବରେ ଦେଖି ପାରିବ, ତାଙ୍କ କଥା ଶୁଣି ପାରିବ । ସେମାନେ ଲୁଚିବା ସାଙ୍ଗେ ସାଙ୍ଗେ ରଜା ଉତ୍‌କ୍ଷିପ୍ତ ହୋଇ ଭିତରକୁ ପଶି ଆସିଲେ । ରାଣୀ ମଧ୍ୟ ରଜାଙ୍କ ପଶି ଆସିବା ସାଙ୍ଗେ ସାଙ୍ଗେ ଖୁବ୍ ଭୟ ପାଇଗଲେ ।

ରଜା ॥ କିଏ, କିଏ କଥା କହୁଥିଲା ?

ରାଣୀ ॥ କାହିଁ, କୋଉଠି, କିଏ ?

ରଜା ॥ ମୁଁ ଗଳା ଶୁଣିଲି !

ରାଣୀ ॥ ନିଜ ଛଡ଼ା ଆଉ କିଏ ଅଛୁ କଥା କହିବାକୁ ?

ରଜା ॥ ଏଁ, ତମେ ତା'ହେଲେ ସ୍ୱର ବଦଳେଇପାର ?

ରାଣୀ ॥ ହଁ । ନିଜ ସାଙ୍ଗରେ କଥା କହିଲାବେଳେ ।

ରଜା ॥ କହିଲ ଆଉ ଥରେ, ଶୁଣିବି !

ରାଣୀ ॥ ଆପଣ ତ ଅଛନ୍ତି । ନିଜ ସାଙ୍ଗରେ କଥା କହିବି କାହିଁକି ?

ରଜା ॥ ମୁଁ ଖବର ପାଇଛି ।

ରାଣୀ ॥ କ'ଣ ଖବର ପାଇଛନ୍ତି ?

ରଜା ॥ କେହି ଜଣେ, ସାଙ୍ଗରେ ଗୋଟାଏ ସ୍ତ୍ରୀ ଲୋକ, ରାଜ୍ୟ ଭିତରକୁ ପଶି ଆସିଛି ।

ରାଣୀ ॥ ଓ ! ରାଜ୍ୟ ଭିତରକୁ ! ଭଉଁରି ଭିତରକୁ ନୁହେଁ !

ରଜା ॥ କାହିଁକି, ଏଠିକି ଆସିବନି କାହିଁକି ?

ରାଣୀ ॥ ମାଛ୍ଟ ଚଢ଼ିଲେ ଯୋଉଠି ନବଖଣ୍ଡ, ସେଠିକ ସାହସକର କିଏ ଆସିବ ?

ରଜା ଆଶ୍ଚର୍ଯ୍ୟ ହେଲେ । ତାଙ୍କର ବିଶ୍ୱାସ ଆସିଲା ଯେ, ସତରେ କେହି ଆସି ନାହାନ୍ତି ।

ରାଣୀ କିନ୍ତୁ ତାଙ୍କ କଥା ଶେଷ କରି ନଥିଲେ । ପୁର୍ବ କଥାର କେର୍ ଟାଣି ସେ କହିବାକୁ ଲାଗିଲେ,

ରାଣୀ ॥ ମୁଁ ତ ସବୁଦିନ ଭଳି ଏକା ଥିଲି । ନିଜ ସାଙ୍ଗରେ କଥା କହୁଥିଲି ।

ରଜା ॥ ଓଃହୋ, ତମେ ପୁଣି ବହୁତ କଥା କହୁଚ ।

ରାଣୀ ॥ ମନେ ନଥିଲା ।

ରଜା ॥ କ'ଣ କହିବ ?

ରାଣୀ ॥ ପୁତ୍ତଳିକା

ରଜା ॥ ହଁ, ପୁତ୍ତଳିକା ।

ରାଣୀ ॥ ମୁଁ ଗୋଟାଏ ସ୍ୱପ୍ନ ଦେଖିଥିଲି ।

ରଜା ॥ ମୋ' ସ୍ୱପ୍ନ ନିଶ୍ଚୟ !

ରାଣୀ ॥ ନାଁ ।

ରଜା ॥ ତା' ହେଲେ ସେ ସ୍ୱପ୍ନ ନୁହେଁ । ଏ ରାଜ୍ୟର ସମସ୍ତେ ମୋତେହିଁ ସ୍ୱପ୍ନ ଦେଖନ୍ତି ।

ରାଣୀ ॥ ମୁଁ କିନ୍ତୁ ସ୍ୱପ୍ନ ଦେଖିଥିଲି, କଣ୍ଢେଇର ।

ରଜା ॥ କଣ୍ଢେଇ ?

ରାଣୀ ॥ ଯୋଉ କଣ୍ଢେଇ ଗୁଡ଼ାକ ଆପଣ ମୋତେ ଦେଇଥିଲେ !

ରଜା ॥ ହଁ, ମନେ ପଡ଼ିଲା । ସମୟ କଟେଇବା ପାଇଁ ଦେଇଥିଲି ।

ରାଣୀ ॥ ମୁଁ ସେଇ କଣ୍ଢେଇମାନଙ୍କ ସାଙ୍ଗରେ ଖେଳେଁ । ଖେଳି ଖେଳି ଥକି ପଡ଼ିଲେ, ସେମାନଙ୍କୁ ଗୋଟାଏ କାଚ ପେଡ଼ି ଭିତରେ ରଖିଦିଏଁ ।

ରାଜା ॥ ସ୍ୱପ୍ନର କ'ଣ ହେଲା ?

ରାଣୀ ॥ ସ୍ୱପ୍ନ ଦେଖିଲା, ସେଇ କଣ୍ଢେଇ ଗୁଡ଼ାକ କାଚ କବାଟ ଭାଙ୍ଗି ମୋ' ବିଛଣା ପାଖକୁ ଚାଲି ଆସିଲେ ।

ରାଜା ॥ ତା' ପରେ ?

ରାଣୀ ॥ କହିଲେ, ଆମେ ଆଉ ସେଠି ରହି ପାରିବୁନି ।

ରାଜା ॥ ସେମାନଙ୍କୁ ଲୁହା କୋଠରି ଭିତରେ ବନ୍ଦକରି ରଖିଦିଅ ।

ରାଣୀ ॥ ମୁଁ ଆଉ ସେ କୋଠରି ଭିତରେ ରହି ପାରିବିନି ।

ରାଜା ॥ ରାଣୀ !

ରାଣୀ ॥ ପୁତ୍ତଳିକା ।

ରାଜା ॥ ସେମାନେ କାହାନ୍ତି ?

ରାଣୀ ॥ କୋଉମାନେ ?

ରାଜା ॥ ସେଇ ଲୋକଟା ଆଉ ତା' ସାଙ୍ଗରେ ସେଇ ଝିଅଟା ?

ରାଣୀ ॥ ମୁଁ କେମିତି ଜାଣିବି ?

ରାଜା ॥ ଜାଣି ନଥିଲେ କଣ୍ଢେଇର ସ୍ୱପ୍ନ ଦେଖି ନଥା'ନ୍ତ ।

ରାଣୀ ॥ ସେମାନଙ୍କୁ ପାଇଲେ ଆପଣ କ'ଣ କରିବେ ?

ରାଜା ॥ ରାଜାମାନେ କ'ଣ କରନ୍ତି ?

ରାଣୀ ॥ ଶୂଳୀ ଦିଅନ୍ତି ।

ରାଜା ॥ ହଁ, ଶୂଳୀ, ଶୂଳୀରେ ଚଢ଼ାଇବି ।

ନିରଂଜନ ଆଉ ସମ୍ଭାଳି ହୋଇ ରହି ପାରିଲାନି । ଭୟରେ ଶୁନଥା ହୋଇଗଲା । ଅତର୍କିରେ ସେଇ ଲୁଚିଥିବା ଜାଗାରୁ ହଠାତ୍ ମୁଣ୍ଡ ବାହାର କରି ପାଟି କରି ଉଠିଲା,

ନିରଂଜନ ॥ ମରିଗଲିରେ ବାବା !

ରାଜା ମଧ ଚମକ ପଡ଼ିଲେ । ଏମିତ ଅପ୍ରତ୍ୟାଶିତ ସ୍ୱରରେ ସେ ଅନ୍ୟ ଲୋକର କଥା ଶୁଣିବେ ବୋଲି ଧାରଣା କରି ପାରି ନଥିଲେ । ତେଣୁ ଏପାଖ ସେପାଖ ସେ ଖୋଜୁଥିଲେ, ଯଦିଓ ନିଜ ଜାଗାରୁ ଘୁଞ୍ଚୁ ନଥିଲେ ( ଭୟରେ କି ? )

ରାଜା ॥ କିଏ, କାହିଁ, କୋଉଠୁ କହୁଛି ?

ରାଣୀ ମଧ ଭୟରେ କମ୍ପୁଥିଲେ । ଧରା ପଡ଼ିଗଲେ ପରା ! ଏଇ ସମ୍ଭାବନା ତାଙ୍କୁ କିଂକର୍ତ୍ତବ୍ୟ କରି ଦେଉଥିଲା, ତେଣୁ ସେ ମଧ ରାଜାଙ୍କ କଥାରେ ସମାନ ଉଚ୍ଚ ଗଳାରେ ପାଟି କରି ଉଠିଲେ,

ରାଣୀ ॥ କିଏ, କାହିଁ, କୋଉଠୁ କହୁଛି ?

ରାଜା ॥ ସେଇ, ସେଇ ଲୋକଟା !

ରାଣୀ ॥ ନାଁ, ନାଁ, ମୁଁ କହୁଛି ।

ରାଜା ॥ ମୁଁ ବିଶ୍ୱାସ କରେନି । ମୋ' ସେନାପତି, ମୋ' ମନ୍ତ୍ରୀ, ଏମାନେ ସବୁ କୁଆଡ଼େ ଗଲେ ? କଟୁଆଳକୁ ମୁଁ ବରଖାସ୍ତ କରିବି ।

ରାଣୀ ॥ ଥରେ ଚିନ୍ତାକଲେ ଦେଖି, ସିଏ ଆପଣଙ୍କର ନିଜ ସ୍ୱର ନୁହେଁତ ?

ରାଜା ॥ ମୁଁ କହିଲି ? ମୁଁ କହିଲି, ମରିଗଲିରେ ବାବା ?

ରାଣୀ ॥ ବେଳେ ବେଳେ ଚିନ୍ତାଟା ଅନ୍ୟ କାହାର ସ୍ୱରପରି କାନକୁ ଶୁଭେ ।

ରାଜା ॥ ମୁଁ ରାଜା, ମୁଁ ମରେନି । ମୋ'ର ସିଂହାସନ ଅଛି । ଓଟମୁହାଁ ପ୍ରଜା ଅଛନ୍ତି । ମନ୍ତ୍ରୀ, ସେନାପତି, ସାଧବ, କଟୁଆଳ ଏମାନେ ଅଛନ୍ତି । ମୁଁ ମରିବି ନାହିଁ ।

ନିରଂଜନ ଆଉ ସମ୍ଭାଳି ପାରିଲା ନାହିଁ । ରାଜାଙ୍କର ଏ ବାହାସ୍ଫୋଟ ତାକୁ ଅସହ୍ୟ ଲାଗୁଥିଲା । ଯାହା ଘଟିବାର ଘଟିଯାଉ ପଛେ, ସେ ବି ପଦେ ଦି'ପଦ ଝାଡ଼ି ଦବାର ଲୋଭ ଛାଡ଼ି ପାରିଲାନି ।

ରାଜାଙ୍କ ସେମିତି ଅଜବ । ନିରଂଜନ କଥାଗୁଡ଼ାକ, ତାଙ୍କ ନିଜ ଭିତରୁ କିଏ କହୁଛି ବୋଲି ସେମିତି ବୋଧ କରୁଥିଲେ । ତେଣୁ ସେ ତୁଚ୍ଛ କଥାର ଜବାବ ଦେଉଥିଲେ, ତାକୁ ନଖୋଜି, ତା' ବିଷୟରେ କିଛି ନବୁଝି । ରାଜାଙ୍କ କଥା ଉପରେ ନିରଂଜନ କହିଲା,

ନିରଂଜନ ॥ ସିଂହାସନଟା ଯଦି ଭାଙ୍ଗିଯାଏ ?

ରାଜା ॥ କିଏ, କିଏ କହିଲା ଏ କଥା ?

ରାଣୀ ॥ ଆପଣ ତ ନିଜେ କହିଲେ ।

ରାଜା ॥ ମୁଁ, ମୁଁ କହିଲି ! ମୁଁ ତ କହିଲି ସିଂହାସନ ଭାଙ୍ଗିବ ନାହିଁ ।

ନିରଂଜନ ॥ ସିଂହାସନ କାହାର ମୌରସୀ ସଂପତ୍ତି ନୁହେଁ ।

ରାଜା ॥ ସିଂହାସନ ମୋ'ର । ଯେତେଦିନ ପର୍ଯ୍ୟନ୍ତ ମୁଁ ଅଛି, ସେତେଦିନ ପର୍ଯ୍ୟନ୍ତ ସିଂହାସନ ଅଛି ।

ନିରଂଜନ ॥ ଓଟମୁହାଁ ପ୍ରଜାମାନେ ମଣିଷ ହୋଇଗଲେ ?

ରାଜା ॥ ସିଂହାସନ ଥିବ ।

ନିରଂଜନ ॥ ସେମାନେ ସିଂହାସନରୁ ଯଦି ଟାଣି ଆଣନ୍ତି ?

ରାଜା ॥ ଓଟମୁହାଁମାନେ ମଣିଷମୁହାଁ ହେବେନି ।

ନିରଂଜନ ॥ କିନ୍ତୁ ଥରେ ମଣିଷମୁହାଁ ହୋଇଗଲେ ଆଉ ଓଟମୁହାଁ ହେବେନି ।

ରାଜା ॥ ମୋ' ସିଂହାସନ—ମୋ' ସିଂହା·..........

କହୁଁ କହୁଁ ରାଜା ହଠାତ୍ ଅଟକି ଗଲେ । କେମିତି ଗୋଟାଏ ଅବିଶ୍ୱାସ ତାଙ୍କ କଥାକୁ ଅଧାବାଟରୁ ବନ୍ଦ କରିଦେଲା । ସେ ବିଶ୍ୱାସ କରି ପାରୁ ନଥିଲେ, ଦୁଇଜଣ ହୋଇ ସେ ନିଜ ସାଙ୍ଗରେ କଥୋପକଥନ କରୁଥିଲେ । ତେଣୁ ସେ ଏକ ଅବିଶ୍ୱାସ ଦୃଷ୍ଟିରେ ରାଣୀଙ୍କୁ ଅନେଇଲେ, ଏବଂ ତାଙ୍କୁ ପଚାରିଲେ,

ରାଜା ॥ ରାଣୀ, ଇଏବ ମୋ' କଥା ? ମୁଁ ଏ କଥାବ କହୁଛ ?

ରାଣୀ ତାଙ୍କୁ ବୁଝେଇବାକୁ ଚେଷ୍ଟାକଲେ । ଯେପରି ସେ ରାଜାଙ୍କୁ ତାଙ୍କର କଥାର ସ୍ୱରୂପରେ ଏବଂ ଗଳାର ଜୋର୍‌ରେ ବିଶ୍ୱାସ ଦେବାକୁ ଚେଷ୍ଟା କରୁଥିଲେ ।

ରାଣୀ ॥ ହଁ । ଆପଣ ନିଜେ କହୁଚନ୍ତି । ନିଜେ ପୁଣି ଉତ୍ତର ଦେଉଚନ୍ତି । ମୁଁ ନିଜେ ସବୁକଥା ଶୁଣିଚି ।

ରାଜା ବିବ୍ରତ ହୋଇ ପଡ଼ିଲେ । କୋଉ କଥାଟା ଠିକ୍ ଆଉ କୋଉଟା ଭୁଲ୍ ସେ ନିଜେ ଠିକ୍ କରି ପାରୁ ନଥିଲେ । କେମିତି ଏକ ଅଶାନ୍ତିବୋଧ ଏବଂ ବିଚଳିତ ମନ ତାଙ୍କୁ ଅସ୍ଥିର କରୁଥିଲା । ସେ ପ୍ରାୟ ନିଜ ମନକୁ ମନ କହିଲେ,

ରାଜା ॥ ମୁଁ ନିଜେ କାହିଁକି ଏ କଥା କହୁଚି ? ସେଇ ଲୋକଟା ଆସିଲା ବୋଲି ? ଯାହା ସାଙ୍ଗରେ ଗୋଟାଏ ଝିଅ ? କୁଆଡ଼େ, କୁଆଡ଼େ ଗଲା ସିଏ ? ମୁଁ ତାକୁ ଯେମିତି ହେଉ ଖୋଜି ବାହାର କରିବି । ମୁଁ ବର୍ତ୍ତମାନ ଦରବାରକୁ ଯିବି ।

ରାଜା ଅସ୍ଥିର ପାଦରେ ଘରୁ ବାହାରି ଗଲେ । ରାଣୀ ଆଶ୍ୱସ୍ତ ହେଲେ । ଯେ ନିରଂଜନ ଲୁଚିଥିବା ଜାଗାକୁ ଚାହିଁଥିଲେ । କିନ୍ତୁ ସେଇ ସମୟରେ ନିରଂଜନ ତା' ଜାଗରୁ ବାହାରି ଆସି ଦେଖା ଲୁଚିଥିବା ଜାଗାକୁ ଗଲା ଏବଂ ସେଇଠୁ ଦେଖାକୁ ଉଠେଇ ଆଣି ରାଣୀଙ୍କ ସାମନାରେ ଠିଆହେଲା । ଏତେ ସମୟ ଲୁଚି ରହିଥିବାରୁ ତା' ଅଣ୍ଟା ପିଠି ଲାଗି ଯାଇଥିଲା, ସେ ଟିକିଏ ଅଣ୍ଟା ସଳଖି ନିଜକୁ ସଜାଡ଼ି ନେଲା ।

ନିରଂଜନ ॥ ଓହୋରେ, ଗୋଟାଏ ଭଷ୍ଟ କଟିଗଲା । ଲୁଚି ଲୁଚି ଅଣ୍ଟାପିଠି ରହିଗଲାଣି ।

ରାଣୀ ॥ ଏଥର ପଳାଅ ।

ନିରଂଜନ ॥ ଏତେ କଥା ହୋଇଗଲା ପରେ ଫେର୍ ପଳେଇବାକୁ କହୁଚନ୍ତି ?

ରାଣୀ ॥ ହେଉଚ କଷ୍ଟରେ ତୁମକୁ ମୁଁ ରକ୍ଷା କରିଚି ।

ନିରଂଜନ ॥ କଣ୍ଢେଇର ଫେର୍ ଏତେ କରାମତି ଥିଲା ବୋଲି କିଏ ଜାଣିଥିଲା ?

ରାଣୀ ॥ କଣ୍ଢେଇ ହାଟପେଡ଼ିରୁ ବାହାରି ଆସିଚି ।

ନିରଂଜନ ॥ ସମସ୍ତେ ବାହାରି ଆସିବେ । ଏ ଝିଅ ଯାହା ଭେଳିକି ଲଗେଇଲାଣି, ଘର ହଟ୍ଟମେଳ ପାଲା ଲାଗିବ ।

ରାଣୀ ॥ ତମେ ଏଇଠି ରହିବ, ମୋ ପାଖରେ ?

ନିରଂଜନ ॥ ରାଜା ତା'ହେଲେ ମଣିଷ ବାସନା ପାଇଯିବେ ।

ରାଣୀ ॥ ତୁମେ ପଛେ ଯାଅ, କିନ୍ତୁ ତାକୁ ମୋ' ପାଖରେ ଛାଡ଼ିଦେଇ ଯାଅ ।

ନିରଂଜନ ॥ ସେ ଆପଣଙ୍କ ପାଖରେ ରହିଲେ ଭେଳିକି ଲଗେଇବ କିଏ ? ( ଦେଖାକୁ ) ତୁ ଯଦି ଖାଲି ଠିକିଏ କଥା କହି ପାରନ୍ତୁ ନା !

ରାଣୀ ॥ ହୁଏତ ସେ ସେଇଦିନ କଥା କହିବ, ଯୋଉ ଦିନ ସିଂହାସନ ଭାଙ୍ଗି ପଡ଼ିବ ।

ନିରଂଜନ ॥ ଦେଖାଯାଉ, କୋଉପାଣି କୁଆଡ଼େ ଯାଉଚି ! ଆ' ଯିବା ।

ରାଣୀ ॥ ତମେ ତା' ହେଲେ ଯାଉଚ ?

ନିରଂଜନ ॥ ହଁ ।

ରାଣୀ ॥ କୁଆଡ଼େ ?

ନିରଂଜନ ॥ ଦରବାରକୁ ।

ରାଣୀ ॥ ପୁଣି ଦରବାରକୁ ?

ନିରଂଜନ ॥ ସେଇଠି ତ ଅସଲ ପାଲା, ଆ' ।

ଦେଖାର ହାତ ଧରି ନିରଂଜନ ଚାଲିଗଲା । ରାଣୀ ଆହତ ଅବସନ୍ନ ମନ ନେଇ ସେମାନଙ୍କର ଯିବା ବାଟକୁ ଚାହିଁ ରହିଲେ । ଯେପରି ଏଇ ମୁହୂର୍ତ୍ତରେ ମୁଣ୍ଡଟେକି ଉଠିଥିବା ଆଶା ତାହାର ଆଘାତରେ ସର୍ଙ୍କି ଚୂର୍ଣ୍ଣ ଚିକ୍ ଚିକ ହୋଇଗଲା । ଠିକ୍ ଏଇ ସମୟରେ ସମୟ ସୂଚକ ଘଣ୍ଟା ଧ୍ୱନି ହେଲା । ତୂର୍ଯ୍ୟନାଦ ହେଲ ସମସ୍ତ ପରିବର୍ତ୍ତନର ସୂଚନା ଦେଇ । ଏବଂ ନହବତ୍ ସହିତ ମହୁରୀ ଇତ୍ୟାଦି ବାଜି ଉଠିଲା । ରାଣୀ ନିସ୍ପୃହ, ନିରାସକ୍ତ ଭାବରେ ମନକୁ ମନ କହିଲେ,

ରାଣୀ ॥ ପୁଣି ଦରବାର ବସିବ । ପୁଣି ଡାକରା ଆସିବ । ପୁଣି ସେଇ କଣ୍ଢେଇର ଅଭିନୟ ।

ରାଣୀଙ୍କ ହୃଦୟରୁ, ନିଜ ଅଜାଣତରେ ଏକ ଦୀର୍ଘନିଶ୍ୱାସ ବାହାରି ପବନରେ ମିଳେଇଗଲା, ଠିକ୍ ରାଣୀଙ୍କ ଭିତରେ କିଛିକ୍ଷଣ ଆଗରୁ ମୁଣ୍ଡ ଟେକିଥିବା ଆଶାପରି ।

ମଞ୍ଚ ଅନ୍ଧାର ହେଲା ।

ସନ୍ତ୍ର ହୋଇ ଗଲଣି । ବର୍ତ୍ତମାନ ଦରବାରର ସମସ୍ତ ନୂତନ୍ହିଁ । ତେଣୁ ଦରବାର କକ୍ଷ ଭିତରେ ସ୍ପଷ୍ଟ ଦୀପ୍ତିଉଜ୍ଜ୍ୱଳ ଆଲୋକ ନାହିଁ । ପ୍ରାୟ ଲୁଚ ଲୁଚ ଅନ୍ଧାର । ଏଇ ଲୁଚ ଲୁଚ ଅନ୍ଧାର ଭିତରେ ଦରବାର ଘରଟା ଗୋଟାଏ ଭୂତ କୋଠି ଭଳିଆ ଦେଖା ଯାଉଚି । ଏମିତି ଏକ ସମୟରେ, ଖୁବ୍ ସନ୍ତର୍ପଣରେ ଦରବାର ଭିତରକୁ ପଶି ଆସିଲେ ମନ୍ତ୍ରୀ । ସେ ଯେମିତି କାହାକୁ ଖୋଜୁଥିଲେ, ମଞ୍ଚାର ସ୍ତମ୍ଭ ପାଖରେ ଘୂରି ଘୂରି, କକ୍ଷ ଭିତରର ନାନା ଅନ୍ଧ ସନ୍ଧି ଭିତରୁ ସେ କାହାକୁ ପାଇବାକୁ ଚେଷ୍ଟା କରୁଥିଲେ । ଏଣେ ଧରା ପଡ଼ିଯିବା ଭୟରେ ମଧ୍ୟ ବେଳେ ବେଳେ ଏଣିକି ତେଣିକି ଚାହୁଁଥିଲେ । ଏତିକିବେଳେ ସେନାପତି ମଧ୍ୟ ପଶି ଆସିଲେ । ତାଙ୍କ ଭାବ ଭଙ୍ଗୀରୁ ଜଣା ଯାଉଥିଲା, ମନ୍ତ୍ରୀଙ୍କ ପରି ସେ ମଧ୍ୟ କାହାର ସନ୍ଧାନରେ ବାହାରିଚନ୍ତି । ଖୋଜି ଖୋଜି ସେ ଯାଇ ମନ୍ତ୍ରୀଙ୍କ ପଛ ପାଖରେ ପହଞ୍ଚିଲେ । ସେତେବେଳକୁ ମନ୍ତ୍ରୀ ନଇଁ ପଡ଼ି ମଞ୍ଚା ସନ୍ଧିରେ କ'ଣ ଅନୁସନ୍ଧାନ କରୁଥିଲେ । ସେନାପତିଙ୍କର ମନେ ହେଲା, ସେ ଯାହାକୁ ଖୋଜୁଚନ୍ତି ସେ ବୋଧହୁଏ ଏଇ ଲୋକଟି । ତେଣୁ ସେ ମନ୍ତ୍ରୀଙ୍କୁ ପଛ ଆଡ଼ୁ ଭିଡ଼ିଧରି ଅଧିକ ଉତ୍ତେଜିତ କଣ୍ଠ ସ୍ୱରରେ ଚିତ୍କାର କରି ଉଠିଲେ,

ସେନାପତି ॥ ପାଇଚି ! ପାଇଚି !

ଏମିତି ଏକ ଅପ୍ରତ୍ୟାଶିତ ପଛପାଖରୁ ଆଲିଙ୍ଗନରେ ମନ୍ତ୍ରୀ ପ୍ରଥମେ ଚମକି ପଡ଼ିଲେ । ସେ ଧରାପଡ଼ି ଯାଇଚନ୍ତି, ଏଇ ଭୟରେ ପ୍ରଥମେ ସଂନ୍ତ୍ରସ୍ତ ହୋଇ ଉଠିଲେ । ସେ ସେନାପତିଙ୍କ କବଳରୁ ନିଜକୁ ଛଡ଼େଇବାକୁ ଯାଇ ପଛକୁ

ଫେର ଅନେଇଲେ ଏବଂ ସେନାପତିଙ୍କୁ ଦେଖି ପାଣ ସେ ଚେଷ୍ଟା କଷ୍ଟିତ ଆଶ୍ଚର୍ଯ୍ୟ ହୋଇ ଏବଂ ନିଜକୁ ମୁକ୍ତ କରିବାକୁ ଯାଇ କହିଲେ,

ମନ୍ତ୍ରୀ ॥ ଓହୋ ଛାଡ଼୍ ! ଛାଡ଼୍ ! ମୁଁ ପରା ମନ୍ତ୍ରୀ !

ସେନାପତି ଛାଡ଼ିଦେଲେ ଯେତେବେଳେ ଜାଣି ପାରିଲେ ତାଙ୍କର ଉପସ୍ଥିତ ବ୍ୟକ୍ତି ସେ ନୁହନ୍ତି, ସେ ମନ୍ତ୍ରୀ । ପ୍ରଥମ ଆଶା ଭଙ୍ଗର ଦୁଃଖରେ ସେ ମ୍ରିୟମାଣ ହୋଇଗଲେ । ମନ୍ତ୍ରୀଙ୍କ ପାଖରେ ଧରା ପଡ଼ି ଯାଇଚନ୍ତି, ଏଭଳି ଚିନ୍ତାରେ ମଧ୍ୟ ଟିକିଏ ଦବିଗଲେ ।

ସେନାପତି ॥ ଓ, ତୁମେ ତା'ହେଲେ ସେ' ନୁହଁ !

ମନ୍ତ୍ରୀ ॥ ସେ'—ମାନେ ? ଓହୋ ବୁଝିଲି ।

ସେନାପତି ॥ କ'ଣ ବୁଝିଲ ?

ମନ୍ତ୍ରୀ ॥ ତମେ ବର୍ତ୍ତମାନ କାହାକୁ ଖୋଜିବାକୁ ଆସିଥିଲ !

ସେନାପତି ॥ କାହାକୁ ?

ମନ୍ତ୍ରୀ ॥ ସେଇ ଯୋଉ ଟୋକାଟା ଆଜି ତା' ସାଙ୍ଗରେ ସେଇ ଝିଅଟା ! ସେଇ ନିରଂଜନ ଆଉ ଦେବୀ ! କ'ଣ, ଠିକ୍ କହୁଚି କି ନାହିଁ ?

ସେନାପତି ॥ ହଁ ଯେ···କିନ୍ତୁ କାହାନ୍ତି ସେମାନେ ?

ମନ୍ତ୍ରୀ ॥ ମୁଁ ବି ତ ସେଇ ଦି'ଜଣଙ୍କୁ ଖୋଜିବାକୁ ଆସିଥିଲି । ଆଚ୍ଛା, ମୋତେ ଗୋଟାଏ କଥା ଆଗେ ବୁଝେଇଦେଲ ! ଦରବାର ତ ଛୁଟି ହେଇଗଲା, ତମେ ଘରକୁ ଚାଲିଗଲ, ଫେରି ଫେର ଆସିଲ କାହିଁକି ?

ସେନାପତି ॥ ଘରେ ଆଉ ରହି ହେଲା ନାହିଁ । କି ଭେଳିକି ଯେ ଲଗେଇ ଦେଲା ସେ ଝିଅଟା, ଘର ଭିତରେ ଆଉ ମନଟା ସ୍ଥିର ହେଲା ନାହିଁ ।

ମନ୍ତ୍ରୀ ॥ ଠିକ୍, ମୋ'ର ବି ସେଇ ଅବସ୍ଥା ।

କହୁଁ କହୁଁ ସେ ଦୂରରୁ କ'ଣ ଦେଖିପାରି ଚମକି ଉଠିଲେ, ସେ ଯେତିକି ବିସ୍ମିତ ହେଲେ ସେତିକି ଆତଙ୍କିତ ହେଲେ ମଧ୍ୟ । ତେଣୁ ସେ ସେନାପତିଙ୍କର ହାତ ଚିପି ଧରିଲେ ।

ମନ୍ତ୍ରୀ ॥ ସେନାପତି !

ସେନାପତି ॥ କ'ଣ ?

ମନ୍ତ୍ରୀ ॥ ହେଇ ଦେଖ, ସାଧବ କଣ୍ଟିଆଳ ବି ଏଇ ଆଡ଼କୁ ଆସୁଚନ୍ତି ।

ସେନାପତି ॥ ଉଦ୍ଦେଶ୍ୟ ?

ମନ୍ତ୍ରୀ ॥ ହୁଏତ ଆମରି ଭଳି ସେମାନେ ବି ଖୋଜିବାକୁ ଆସିଚନ୍ତି, ନହେଲେ ରାଜା ସନ୍ଦେହ କରି ଆମ ପଛରେ ଚର ପଠେଇଚନ୍ତି ।

ସେନାପତି ॥ ତା'ହେଲେ କ'ଣ କରିବା ?

ମନ୍ତ୍ରୀ ॥ ଆସ, ଏଇଠି କୋଉଠି ଲୁଚି ଯାଇ ସେମାନଙ୍କ ମତଲବ ଠଉରେଇବା, ଆସ, ସେମାନେ ଆସି ପହଞ୍ଚି ଯିବେ ।

ସେ ଦୁଇଜଣ ଗୋଟାଏ ସୁବିଧା ଜାଗା ଦେଖି ଲୁଚିଗଲେ । କିଛିଏ ପରେ ଦରବାରର ବାହାର ଦରଜା ଅଡ଼ୁ କଣ୍ଟିଆଳର ମୁଣ୍ଡ ଦରବାର ଭିତରକୁ ଲମ୍ବି ଆସିଲା । ଏପାଖ ସେପାଖ ହୋଇ ସେ ମୁଣ୍ଡଟି କାହାକୁ ଅନୁଧ୍ୟାନ କଲା, ତା' ପରେ କଣ୍ଟିଆଳର ସମସ୍ତ ଦେହଟି ଦରବାର ଭିତରକୁ ପଶି ଆସିଲା । କେହି କାହାନ୍ତି ଭାବି କଣ୍ଟିଆଳ ନିଶ୍ଚିନ୍ତ ହେଲା ଏବଂ ହାତ ଠାରି ଦରବାର ବାହାରୁ କାହାକୁ ଆସିବାକୁ ଇସାରା କଲା । ଭିତରକୁ ପଶିଆସିଲା ସାଧବ । ଦୁଇଜଣ ଯାକ ହାତ ଧରାଧରି ହୋଇ ଖୋଜୁଥିଲେ । ଖୋଜୁ ଖୋଜୁ ସେନାପତି ଏବଂ ମନ୍ତ୍ରୀ ଲୁଚିଥିବା ଜାଗାରେ ପହଞ୍ଚିଗଲେ । ମନ୍ତ୍ରୀ ଓ ସେନାପତି ଲୁଚିଥିବା ଜାଗାରେ ହଠାତ୍ ଠିଆ ହୋଇ ପଡ଼ିଲେ । ସାମନାରେ

ଭୂତ ଦେଖିଲ ଭଳିଆ ଏମାନେ ଚମକି ଉଠିଲେ ଏବଂ ପର ମୁହୂର୍ତ୍ତରେ ଦୁଇଜଣ ଯାକ ଦ୍ରୁତ ଗତିରେ ଦରବାର ଛାଡ଼ି ପଳେଇବାକୁ ବସିଥିଲେ । ମନ୍ତ୍ରୀ ଓ ସେନାପତି ମଧ୍ୟ ଲୁଚିଥିବା ଜାଗାରୁ ପଦାକୁ ବାହାରି ଆସିଲେ, ସେନାପତି ପଳଉଥିବା ଏ ଦୁଇ ଜଣଙ୍କୁ ଡାକ ଛାଡ଼ିଲେ,

ସେନାପତି ॥ କିଓ, କିଓ, ଆସିଥିଲତ, ଫେର୍ ଫେରିଯାଉଚ କୁଆଡ଼େ ?

କଣ୍ଟୁଆଳ ॥ ( ଠିଆ ହୋଇପଡ଼ି, ସାଧବ ମଧ୍ୟ ଠିଆ ହୋଇପଡ଼ିଲା ) ନାଇଁ, କଥା କ'ଣ କି, ଆପଣଙ୍କ ପାଖକୁ ଟିକିଏ ବୁଝିବାକୁ ଆସିଥିଲି ।

ସେନାପତି ॥ କ'ଣ ବୁଝିବାକୁ ଆସିଥିଲ ?

କଣ୍ଟୁଆଳ ॥ ନିଜ ନିଜ ଭିତରେ ଯୁଦ୍ଧ କରି ଆଜି ଆଉ କେତେ ଜଣଙ୍କର ମରିବାର ଅଛି ।

ମନ୍ତ୍ରୀ ॥ ( ସାଧବକୁ ) ଆଉ ତମେ ?

ସାଧବ ॥ ( ଗୁଣିଆଁରେ ) କଣ୍ଟୁଆଳ, ମୁଁ କ'ଣ ପାଇଁ ଆସିଥିଲିଟି ?

ସେନାପତି ॥ ଘଷର ଘଷର ପଦର ଘଷର, ତହିଁରୁ ବହୁଚି ପାଣି,

ମନ୍ତ୍ରୀ ॥ ତମେ ଯେଉଁ ପାଇଁ ଲସର ପସର, ଆମେ ସେ କଥାଟି ଜାଣି ।

ସାଧବ ॥ କି—କି କଥା ?

ସେନାପତି ॥ ବେଙ୍ଗୁଲି କଥା ।

ମନ୍ତ୍ରୀ ॥ କାଠ ବେଙ୍ଗୁଲି ?

ସେନାପତି ॥ କାଠ ବେଙ୍ଗୁଲି ।

ମନ୍ତ୍ରୀ ॥ କି କାଠ ?

ସେନାପତି ॥ ଚନ୍ଦନ କାଠ ।

ମନ୍ତ୍ରୀ ॥ କି ଚନ୍ଦନ ?

ସେନାପତି ॥ ସାଙ୍ଗରେ ଯାହାର ଦେଖା ଅଛି

ମନ୍ତ୍ରୀ ॥ କିଁଟି ତା'ର ନିରଂଜନ ।

କଣ୍ଟୁଆଳ ॥ କୁଆଡ଼େ ଗଲେ ସେ ଦୁ'ଜଣ ?

ମନ୍ତ୍ରୀ ॥ ଆମେ ବି ତ ଖୋଜୁଛୁଁ ।

ସେନାପତି ॥ ଉଆସ ଭିତରକୁ ଯଦି ଚାଲି ଯାଇଥିବେ, ଆଜି ରଜାଙ୍କ ହାବୁଡ଼ରେ ପଡ଼ିଯିବେ···

ମନ୍ତ୍ରୀ ॥ ଚାଲ, ଆମେ ଯେମିତି ହେଉ ସେମାନଙ୍କୁ ରକ୍ଷା କରିବା ।

ସେନାପତି ॥ ସେ ଦୁ'ଜଣ ଆମ ସମସ୍ତଙ୍କୁ ଯୋଉ ନିଶା ଚଖେଇଚନ୍ତି ସେଥିରୁ ଆମର କାହାରି ମୁକ୍ତି ନାହିଁ ।

କଣ୍ଟୁଆଳ ॥ ଆମକୁ ପରି ସେତିକି ବେଳୁ ଆଜି କିଛି ଭଲ ଲାଗୁନି !

ମନ୍ତ୍ରୀ ॥ ଚାଲ, ସେମାନଙ୍କୁ ଖୋଜିବା ।

କଣ୍ଟୁଆଳ ॥ ହଁ । ଚାଲ ।

ସେମାନେ ଚାଲି ଯିବାର କିଛିକ୍ଷଣ ପରେ ହଠାତ୍ ରଜା ଦରବାର ଭିତରକୁ ଅସ୍ତବ୍ୟସ୍ତ ହୋଇ ପଶି ଆସିଲେ । ତାଙ୍କୁ ଦେଖିଲେ ମନେ ହେଉଥିଲା, ସେ ଯେପରି ବିଚଳିତ ହୋଇ ପଡ଼ିଛନ୍ତି । ତେଣୁ ବର୍ତ୍ତମାନ ଦରବାରର ସମୟ ନହେଲେ ବି ସେ ଦରବାର ଭିତରକୁ ପଶି ଆସିଚନ୍ତି ।

ବ୍ୟସ୍ତ ହୋଇ ସେ ଚାରିଆଡ଼କୁ ଚାହିଁଲେ ଏବଂ ମନେ ମନେ କହିବାକୁ ଲାଗିଲେ, କହୁଁ କହୁଁ ସେ ମଞ୍ଚ ଉପରକୁ ଉଠିଗଲେ । ରଜା ଆସିବା ସାଙ୍ଗେ ସାଙ୍ଗେ ଦରବାର ଆଲୋକିତ ହେଲା ।

ରଜା ॥ ଓଃ, ସେମାନେ ଆସି ନାହାନ୍ତି ? ଦରବାର ବସିନି, ଅଥଚ ସେ ଲୋକଟା ଆଉ ସେ ଝିଅଟା ଆସି ପହଞ୍ଚି ଯାଇ-ଚନ୍ତି ? ଉଆସର ଚାରିଆଡ଼େ ମୁଁ ସେମାନଙ୍କର ଗନ୍ଧ ପାଉଚି । ଡେରି କଲେ ହୁଏତ ରାଜ୍ୟ ସାରା ସେମାନଙ୍କ ଗନ୍ଧ ବିଞ୍ଚି ହୋଇ ଯିବ । ମନ୍ତ୍ରୀ, ସେନାପତି, ସାଧବ, କଣ୍ଟୁଆଳ ! ଆସ, ଦରବାର ଆରମ୍ଭ ହେଇ ଯାଇଚି ! ଦରବାର ଆରମ୍ଭ ହେଇ ଯାଇଚି !

ଶେଷ କଥାଟା ସେ ଖୁବ୍ ଜୋର ଚିତ୍କାର କରି କହିଲେ ଏବଂ ହଠାତ୍ ଦରବାର ଆରମ୍ଭ ହୋଇ ଯିବାର ସଂକେତ ସ୍ୱରୂପ ଘଣ୍ଟାଧ୍ୱନି ହେଲା । ସେ ଘଣ୍ଟାଧ୍ୱନି, ଉଦ୍‌ଭ୍ରାନ୍ତ, ଉଚ୍ଚକିତ ଶବ୍ଦ । ପାଗଲା ଗାରଦରୁ ବା କଏଦୀ ଖାନାରୁ କେହି ପଳେଇ ଗଲେ ଯେପରି ତୁହାଇ ତୁହାଇ ଘଣ୍ଟାଧ୍ୱନି ହୁଏ, ସେଇପରି ।

ଟିକଏ ପରେ ବ୍ୟସ୍ତ ହୋଇ ପଶି ଆସିଲେ ସାଧବ, କଟୁଆଳ ଏବଂ ସେନାପତି । ସେମାନେ ଆସି ସେମାନଙ୍କ ନିଜସ୍ୱ ଜାଗାରେ ଆଣ୍ଠେଇ ପଡ଼ି, ବିନା କୌଣସି ଭୂମିକାରେ ଜାତୀୟ ସଙ୍ଗୀତ ଗାନ କରିବାକୁ ଲାଗିଲେ । କିନ୍ତୁ ବର୍ତ୍ତମାନର ଗୀତରେ କୌଣସି ଲୟ ବା ତାଳ ନଥିଲା ।

ଜାତୀୟ ସଙ୍ଗୀତ ( ସମସ୍ତେ ଏକ ସାଙ୍ଗରେ ଗାଇଲେ )

ଓଃ ପରି ଜୀବ ନାହିଁରେ ଭାଇ
ଶାନ୍ତି ତୁ ପାଇବୁ ପା' ଓଃ ହୋଇ
ପିଠିରେ କୁଜଟା କି ମନୋହର,
ତୋ ନଗୁହ ଆଖି ଭାରି ସୁନ୍ଦର ।

ଏଇ ସମୟରେ ମନ୍ତ୍ରୀ ଦୌଡ଼ି ଆସିଲେ । ହଠାତ୍ ଏମିତି ଏକ ପରିସ୍ଥିତିର ସମ୍ମୁଖୀନ ହୋଇ ସେ ଅପ୍ରସ୍ତୁତ ଏବଂ ଅପ୍ରତିଭ ହୋଇଗଲେ । ତାଙ୍କ ଭାଗ୍ୟକୁ ରାଜା ଟିକିଏ ଅନ୍ୟମନସ୍କ ଥିଲେ । ତେଣୁ ସେ ତରତରରେ ନିଜ ଜାଗାକୁ ଚାଲିଗଲେ । ଅନ୍ୟମାନଙ୍କ ପରି ଆଣ୍ଠେଇ ପଡ଼ି ସେ ଗଳା ମିଳେଇ ଗାଇବାକୁ ଚେଷ୍ଟାକଲେ । କିନ୍ତୁ ହେଲାନି । ସମସ୍ତଙ୍କ ଗଳାକୁ ଦବେଇ ତାଙ୍କ ଗଳାରୁ ଖୁବ୍ ଉଚ୍ଚରେ ଜାତୀୟ ସଂଗୀତର କିଛି ଅଂଶ ବାହାରି ପଡ଼ିଲା । ରାଜାଙ୍କର ଅନ୍ୟମନସ୍କତା ଦୂର ହେଲା ଏବଂ ସେ ଭୀଷଣ ବିରକ୍ତ ହୋଇ ଚିତ୍କାର କଲେ ।

ରାଜା ॥ ଓଃ, ବନ୍ଦ କର ।

ଗୀତ ହଠାତ୍ ବନ୍ଦ ହେଲ । ସମସ୍ତେ ଆଣ୍ଠେଇବାଠାରୁ ଉଠି ଠିଆହେଲେ ଏବଂ ନିଜର ବ୍ୟସ୍ତତା ଏବଂ ରାଜାଙ୍କ ଉପସ୍ଥିତି ପ୍ରତି ସଚେତନତା ଦେଖାଇବାକୁ ଯାଇ ସେନାପତି ମନ୍ତ୍ରୀଙ୍କୁ ପଚାରିଲେ,

ସେନାପତି ॥ ( ମନ୍ତ୍ରୀଙ୍କୁ ) ସିଂହାସନ ?

ମନ୍ତ୍ରୀ ॥ ( କଣ୍ଠୁଆଳକୁ ) ସିଂହାସନ ?

କଣ୍ଠୁଆଳ ॥ ( ସାଧବକୁ ) ସିଂହା···

ସାଧବ ॥ ( ଶୂନ୍ୟକୁ ) ସନ ?

କିନ୍ତୁ ଦରବାରରେ କୌଣସି ରକ୍ଷୀ ବା ପ୍ରହରୀ ନଥିଲେ । ତେଣୁ ହଠାତ୍ ସାଧବଟିର କଥା ଶୁଣି ପାଳନ କରିବାକୁ କେହି ତତ୍ପର ହେଲେନି । ରାଜା ମଧ୍ୟ ଏପରି ଅବସ୍ଥା ଲକ୍ଷ୍ୟ କରିଥିଲେ, ତେଣୁ ସେ ମନ୍ତ୍ରୀଙ୍କ ଆଡ଼କୁ କ୍ରୁଦ୍ଧ ଦୃଷ୍ଟିରେ ଚାହିଁଲେ ।

ରାଜା ॥ କାହାନ୍ତି, କାହାନ୍ତି ସେମାନେ ?

ମନ୍ତ୍ରୀ ॥ ନିତ୍ୟକର୍ମ ସାରି ସେମାନଙ୍କର ଆସିବାକୁ ବୋଧହୁଏ ଡେରି ହବ ପ୍ରଭୁ । ଅସମୟରେ ଦରବାର ଡାକରା ପଡ଼ିଗଲା ।

ରାଜା ॥ ତା' ହେଲେ ସିଂହାସନ ?

ମନ୍ତ୍ରୀ ॥ ( ଅସହାୟ ଭାବରେ ସେନାପତିଙ୍କୁ ) ସିଂହାସନ ?,

ସେନାପତି ॥ ( ମନ୍ତ୍ରୀଙ୍କୁ ପ୍ରଶ୍ନଟା ଫେରେଇ ଦେଲେ ) ସିଂହାସନ ?

କଣ୍ଠୁଆଳ ॥ ( ସାଧବକୁ ) ସିଂହାସନ ?

ସାଧବ ॥ ( କଣ୍ଠୁଆଳକୁ ) ସିଂହାସନ ?

ରାଜା ॥ ନାଁ । ତଥାପି ସେମାନେ ଆସି ନାହାନ୍ତି । ମୋ'ର ଦେହରକ୍ଷୀ ଆଜ ଦରବାର ଜଗୁଆଳ । ସେମାନଙ୍କୁ ବରଖାସ୍ତ କର । ମୋ' ସିଂହାସନ ?

କଣ୍ଟୁଆଳ ॥ ( ଦୌଡ଼ିଗଲା ସାଧବ ପାଖକୁ ) ସିଂହା···

ସାଧବ ॥ ସନ !

ଦୁଇଜଣ ଯାକ ଦୌଡ଼ ଦୌଡ଼ ବାହାର ଗଲେ । ସେମାନେ ଯିବା ପରେ ରାଜା ଅସ୍ଥିର ଭାବରେ ମନ୍ତ୍ରୀଙ୍କୁ ଡାକଲେ ।

ରାଜା ॥ ମନ୍ତ୍ରୀ !

ମନ୍ତ୍ରୀ ॥ ହୁମୁଁ !

ରାଜା ॥ ଖବର ପାଇଚ ?

ମନ୍ତ୍ରୀ କୋଉ ଖବର ନ ଜାଣି ଇତସ୍ତତଃ କରୁଥିଲେ । ରାଜା କନ୍ତୁ ତର ସହ୍ୟ ପାରୁନଥିଲେ । ସେ ଆଉଥରେ ଗର୍ଜିଉଠିଲେ ।

ରାଜା ॥ ଖବର ପାଇଚ ?

ମନ୍ତ୍ରୀ ॥ ( ଭୟରେ ) ଖବର ପାଇଚି ହୁମୁଁ !

ସେନାପତି ॥ ଖବର ମୁଁ ବି ପାଇଚି ହୁମୁଁ !

ରାଜା ॥ ( ସେନାପତିଙ୍କୁ ) କି ଖବର ? ( ମନ୍ତ୍ରୀଙ୍କୁ ) କି ଖବର !

ବଡ଼ ଅଡ଼ୁଆରେ ପଡ଼ିଗଲେ ମନ୍ତ୍ରୀ ଓ ସେନାପତି ଦୁଇଜଣ । କ'ଣ କରିବେ କିଛି ଠିକ୍ କରିପାରିଲେ ନାହିଁ । ମନ୍ତ୍ରୀ ସେନାପତିଙ୍କୁ ଗୋଟାଏ ପାଖକୁ ଟାଣି ନେଇ କମ୍ପ କଣ୍ଠରେ ରାଜାଙ୍କୁ ନ ଶୁଭିଲା ଭଳି ପଚାରିଲେ,

ମନ୍ତ୍ରୀ ॥ ( ସେନାପତିଙ୍କୁ ) କି ଖବର ?

ସେନାପତି ॥ କିଛି ନା କିଛି ଖବର ।

ମନ୍ତ୍ରୀ ॥ ତମେ କେମିତି ପାଇଲ ? ମୁଁ ତ ପାଇନ !

ସେନାପତି ॥ ମୁଁ ବି ତ ପାଇନ ।

ମନ୍ତ୍ରୀ ॥ ପାଇନ ତ ରାଜାଙ୍କୁ କହିଲ କେମିତି ?

ସେନାପତି ॥ ତମେ ବି ତ କହିଲ ।

ମନ୍ତ୍ରୀ ॥ ଓହୋ, ରାଜାଙ୍କୁ ସେମିତି କୁହାଯାଏ । ହୁଏତ ରାଜା ବି କିଛି ଖବର ପାଇ ନାହାନ୍ତି । କିଛି ଗୋଟାଏ ପଚାରିବାକୁ ହବ ବୋଲି ପଚାରି ଦେଲେ ।

ସେନାପତି ॥ କାରଣ ସେ ରାଜା ।

ମନ୍ତ୍ରୀ ॥ ଏବଂ ପ୍ରଶ୍ନ ପଚାରିଲେ କିଛି ନା କିଛି ଉତ୍ତର ଦବାକୁ ପଡେ ।

ରାଜା ଅସ୍ଥିର ହୋଇ ଉଠୁଥିଲେ । ମନ୍ତ୍ରୀ ଓ ସେନାପତି ଚୁପ୍ ଚୁପ୍ କ'ଣ ମନ୍ତ୍ରଣା ବା ଗୋପନ ଆଲୋଚନା କରୁଥିଲେ ସେ ବୁଝି ପାରୁନଥିଲେ । ଶେଷକୁ ଆଉ ରହି ନପାରି,

ରାଜା ॥ ଓହୋ, କ'ଣ ମନ୍ତ୍ରଣା କରୁଚ ?

ମନ୍ତ୍ରୀ ॥ ଖବର ପ୍ରଭୁ !

ରାଜା ॥ କାହାର ଖବର ? କି ଖବର ?

ମନ୍ତ୍ରୀ ॥ ମହାରାଜ ଅନେକ ସମୟ ଅପେକ୍ଷା କଲେ ବି ସିଂହାସନ ଆସୁନି । ମୁଁ ପ୍ରହରୀମାନଙ୍କୁ ବରଖାସ୍ତ କରିଦେବି ପ୍ରଭୁ !

ସେନାପତି ॥ ନହେଇ, ସିଂହାସନ ଆସିଗଲା ।

ପ୍ରହରୀ ଦୁଇଜଣ ସନ୍ତର୍ପଣରେ ସିଂହାସନ ଧରି ଆସିଲେ । ପଛରେ ସାଧବ ଓ କଟଥଲ । ସେମାନେ ଆସି ସେମାନଙ୍କ ଜାଗାରେ ଠିଆ ହୋଇଗଲେ । ପ୍ରହରୀ ଦୁଇଜଣ ମଞ୍ଚ ଉପରେ ସିଂହାସନ ରଖିଲେ ଏବଂ ପୁଣି ସେଥି ସ୍ଥାନକୁ ଫେରି ଆସିଲେ । ରାଜା ସିଂହାସନକୁ ଦେଖି ସ୍ୱସ୍ତିରେ ନିଃଶ୍ୱାସ ମାରିଲେ । ସେ ସିଂହାସନରେ ବସିବାକୁ ଯାଉଛନ୍ତି, କାଳେ ପୁଣି ଟଳମଳ କରିବ ଏଇ ଡରରେ ମନ୍ତ୍ରୀ ଓ ସେନାପତି ଦୁଇଜଣ, ରାଜା ବସିବା ପୂର୍ବରୁ ଦୌଡ଼ି ଯାଇ ସିଂହାସନଟିକୁ ଜାବୁଡ଼ି ଧରିଲେ । ରାଜା ସିଂହାସନରେ ବସିଲେ । ମନ୍ତ୍ରୀ ଓ

ସେନାପତି ସିଂହାସନରୁ ହାତ କାଢ଼ିନେଲେ । ରଜା ଆରାମରେ ସିଂହାସନ ଉପରେ ଜମେଇ ବସିଲେ ।

ରଜା ॥ ଆଃ, କି ଆରାମ୍ !

ମନ୍ତ୍ରୀ ॥ ଘୁମ୍ କି ନିରାପଦ !

ସେନାପତି ॥ ରାଜ୍ୟ କି ନିରାପଦ !

ରଜା ॥ ନାଁ, ରାଜ୍ୟ ଆଦୌ ନିରାପଦ ନୁହେଁ ।

ମନ୍ତ୍ରୀ ॥ ସତକଥା ଘୁମ୍, ରାଜ୍ୟ ଆଦୌ ନିରାପଦ ନୁହେଁ ।

ରଜା ॥ ମୁଁ ଖବର ପାଇଛି କିଛି ମଣିଷମୁଣ୍ଡା ରାଜ୍ୟ ଭିତରକୁ ପଶି ଆସିଛନ୍ତି ।

ମନ୍ତ୍ରୀ ଅନେଇଲେ ସେନାପତିଙ୍କୁ, ସେନାପତି କଟୁଆଳକୁ, କଟୁଆଳ ସାଥିଙ୍କୁ । ଏମିତି ଦେଖା-ଦେଖି ହେଲେ, ଆଖିରେ ଇସାରା କଲେ ।

ରଜା ॥ ବୁଝି ପାରୁଛ, ପଶି ଆସିଛନ୍ତି !

ମନ୍ତ୍ରୀ ॥ (ସେନାପତିଙ୍କୁ) ସେମାନଙ୍କୁ ଏଇ ମୁହୂର୍ତ୍ତରେ ଫାଶି ଦିଅ ।

ସେନାପତି ॥ ଫାଶି ତ କଟୁଆଳର କାମ !

କଟୁଆଳ ॥ ମୁଁ ଖବର ପାଇଛି ଅବଶ୍ୟ, କିନ୍ତୁ.........

ରଜା ॥ ରାଜ୍ୟ ସାରା ପ୍ରଚାର କର । ଯିଏ ଯୋଉଠି ମଣିଷମୁଣ୍ଡା ଦେଖିବ, ସାଙ୍ଗେ ସାଙ୍ଗେ ହତ୍ୟା କରିବ, ନହେଲେ ତୁରନ୍ତ ଦରବାରକୁ ଖବର ଦେବ ।

ମନ୍ତ୍ରୀ ॥ ଯାଅ, ପ୍ରଚାର କର !

ଆଜ୍ଞା ପାଇ କଟୁଆଳ ଚାଲିଗଲା ପ୍ରଚାର କରିବାକୁ । ମଞ୍ଚ ସମ୍ମୁଖରେ, ଦର୍ଶକମାନଙ୍କ ଆଗରେ ଘେରାଏ ବୁଲି ଆସିଲା, ତା'ପରେ, କୋଉଠାଏ ଜାଗାରେ ଠିଆହୋଇ ପ୍ରଚାର କରିବାକୁ ଲାଗିଲା ।

କଟୁଆଳ ॥ ଓଃମୂର୍ଖ। ମାନେ ଶୁଣ, ରାଜ୍ୟକୁ ମନ୍ତ୍ରୀସ୍ୱମୂର୍ଖ। ପଶି ଆସିଚନ୍ତି । ଦେଖିବା ମାତ୍ରେ ସେମାନଙ୍କୁ ହତ୍ୟାକର, ନ ହେଲେ ଦରବାରକୁ ଖବର ପଠେଇ ଦିଅ । ଯିଏ ସେମାନଙ୍କୁ ଲୁଚେଇବାକୁ ଚେଷ୍ଟା କରିବ, ସେ ଦଣ୍ଡ ପାଇବ । ଧରି ଦେଲେ ତିରିଶ୍ ହଜାର ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ପାଇବ ।

ମନ୍ତ୍ରୀ ପ୍ରମାଦ ଗଣିଲେ । କାରଣ ତିରିଶ ହଜାର ସ୍ୱର୍ଣ୍ଣ ମୁଦ୍ରା ଲୋଭରେ ହୁଏତ କେହି ନା କେହି ଧରେଇ ଦେଇପାରେ । ସେ ଟିକିଏ ରାଜାଙ୍କୁ ଅନେଇଲେ । ସିଂହାସନର ହସ୍ତାରେ ରାଜା ଟିକିଏ ଟିକିଏ ତୁଳଉ ଥିଲେ । ସେହି ସୁଯୋଗରେ ମନ୍ତ୍ରୀ ଦୌଡ଼ିଗଲେ କଟୁଆଳ ପାଖକୁ ।

ମନ୍ତ୍ରୀ ॥ କଟୁଆଳ, ପୁରସ୍କାର ଘୋଷଣା କାହିଁକି କରୁଚ ? ରାଜା ତ ଆଦେଶ ଦେଇ ନାହାନ୍ତି ! ତମେ କ'ଣ ଜାଣିନ, ପୁରସ୍କାର ସେଇ ତିନିଜଣଙ୍କୁ ଧରେଇ ଦେଇ ପାରିଲେ ମିଳିବ ।

କଟୁଆଳ ॥ (ଦର୍ଶକଙ୍କୁ) ନାଇଁ, ନାଇଁ । ପୁରସ୍କାର ମିଳିବ ନାହିଁ । କିନ୍ତୁ ଧରେଇ ଦବାକୁ ପଡ଼ିବ ।

ଅକସ୍ମାତ୍ ଘଟଣାଟା ଘଟିଗଲା । ଦରବାର ଭିତରକୁ ନିରଂଜନ ଦେଶୀର ହାତ ଧରି ପଶିଆସିଲା । ମନ୍ତ୍ରୀ, ସେନାପତି, ସାଧବ, କଟୁଆଳ ସମସ୍ତେ ଭୟରେ କମ୍ପିବାକୁ ଲାଗିଲେ । ରାଜା ସିନା ବର୍ତ୍ତମାନ ତୁଳଉଚନ୍ତି, କିନ୍ତୁ ସବୁବେଳେ ତ ତୁଳେଇବେ ନାହିଁ ! କାହାରି ମୁଣ୍ଡକୁ କୌଣସି ବୁଦ୍ଧି ଜୁଟୁନି ନାହିଁ । ମନ୍ତ୍ରୀ ନିରଂଜନକୁ ଇଂଗିତ ଦେଲେ ବସିପଡ଼ିବା ପାଇଁ । ନିରଂଜନ ଦେଶୀକୁ ଧରି ବସିପଡ଼ିଲା ଏବଂ ରାଜାଙ୍କ ସମ୍ମୁଖରେ ପାତ୍ରମନ୍ତ୍ରୀମାନେ ଘେରି ଠିଆ ହୋଇଗଲେ । ଠିକ୍ ଏତିକବେଳକୁ ମନ୍ତ୍ରୀଙ୍କ ମୁଣ୍ଡକୁ ବୁଦ୍ଧିଟା ଜୁଟିଗଲା । ସେ ହଠାତ୍ ପାଟି କରି ଉଠିଲେ ।

ମନ୍ତ୍ରୀ ॥ ଦେଖୁଚ, ଦେଖୁଚ, ରାଜାଙ୍କ ମସ୍ତକରେ ଏକ ଶ୍ୱେତବର୍ଣ୍ଣର କେଶ !

ସେନାପତି ॥ ମାନେ ?

କଣ୍ଟୁଆଳ ॥ ଧଳାବାଳ ହେ, ପାଚି ଯାଇଚି !

ରାଜା ଚମକି ପଡ଼ିଲେ । ସେ ସେମାନଙ୍କ ସାମନାରେ ମୁଣ୍ଡ ଝୁଙ୍କେଇ ବସିଲେ ।

ରାଜା ॥ କାହିଁ, କୋଉଠି, ଦେଖାଅ, ତାକୁ ଉପାଡ଼ ଦିଅ, ଧ୍ୱଂସ କର ! ମୋତେ ଆଣି ଦେଖାଅ !

ଅନ୍ୟମାନେ ସମସ୍ତେ ରାଜାଙ୍କ ମୁଣ୍ଡରୁ ଯେତେବେଳେ ଲଗିପଡ଼ି ପାଚିଲାବାଳ ଖୋଜୁଥିଲେ, ମନ୍ତ୍ରୀ କିନ୍ତୁ ସେତେବେଳେ ତାଙ୍କୁ ପଛକରି ଏବଂ ରାଜାଙ୍କ ମୁଣ୍ଡ ଉପରେ ଝୁଙ୍କି ପଡ଼ିଥିବା କଣ୍ଟୁଆଳ ମୁଣ୍ଡରୁ ପାଚିଲାବାଳ ଖୋଜୁଥିଲେ । ଖୋଜୁ ଖୋଜୁ ହଠାତ ମିଳିଗଲା ଏବଂ ସେଇଟି ସେ ଉପାଡ଼ି ଦେଲେ ଏବଂ ଧରି ଉଲ୍ଲାସରେ ଚିତ୍କାର କରିଉଠିଲେ । କିନ୍ତୁ ଏଇ ପ୍ରକ୍ରିୟା ପୂର୍ବରୁ ମନ୍ତ୍ରୀ ନିରଂଜନ ଓ ଦେବୀଙ୍କୁ ଇସାରାରେ ଲୁଚିଯିବା ପାଇଁ ଇଂଗୀତ କରିଥିଲେ । ନିରଂଜନ ଓ ଦେବୀ ଯାଇ ସିଂହାସନ ପଛ ପାଖରେ ଲୁଚିଗଲେ ଏବଂ ଠିକ୍ ସେତିକିବେଳେ ମନ୍ତ୍ରୀ ଘୋଷଣା କଲେ ସେଇ ଧଳା ବାଳଟିକୁ ଟେକିଧରି,

ମନ୍ତ୍ରୀ ॥ ପାଇଚି, ପାଇଚି ପ୍ରଭୁ ! ହେଇ ଦେଖନ୍ତୁ ।

ରାଜା ମନ୍ତ୍ରୀଙ୍କ ହାତରୁ ଧଳାବାଳଟି ନେଲେ । ନିରୀକ୍ଷଣ କରି ଦେଖିବାକୁ ଲଗିଲେ । ଏଇ ଅବସରରେ ପାତ୍ର-ମନ୍ତ୍ରୀଗଣ ନିଜ ନିଜ ଜାଗାକୁ ଫେରିଗଲେ । ରାଜା ଇସାରାରେ କଣ୍ଟୁଆଳକୁ ଡାକିଲେ । କଣ୍ଟୁଆଳ ପାଖରେ ପହଞ୍ଚିଲା ପରେ, ତା' ହାତରେ ପାଚିଲା ବାଳଟି ଧରେଇ ଦେଲେ । କଣ୍ଟୁଆଳ ତାକୁ ସ୍ନେହରେ

ଧରିଲ ଏବଂ ପରମ ଭକ୍ତ ଭରେ ବାଳଟିକୁ ନମସ୍କାର କରି ନିଜ ପୋଷାକରେ ସାଇତି ରଖିଲ । ରାଜା ଏଥର ନିଷ୍ଟ ନ୍ତ । ତେଣୁ ସେ ଡାକଲେ,

ରାଜା ॥ କଟୁଆଳ !

କଟୁଆଳ ॥ ହୁମୁଁ !

ରାଜା ॥ ପ୍ରଚାର କରି ଦେଇଚ ?

କଟୁଆଳ ॥ ରାଜ୍ୟ ସାରା ସମସ୍ତେ ଜାଣିଗଲେଣି ହୁମୁଁ !

ରାଜା ॥ ରାଜ୍ୟ ସାରା ଜାଣିଗଲେଣି ବୋଲି ତମେ କେମିତି ଜାଣିଲ ?

କଟୁଆଳ ॥ ରଜାଘରର କାଗଜପତ୍ରରୁ ହୁମୁଁ !

ମନ୍ତ୍ରୀ ॥ ରଜାଘରର କାଗଜପତ୍ରରେ ଯେତେବେଳେ ଅଛି, ସେଇଟା ସଠିକ୍ ସମ୍ବାଦ ହୁମୁଁ ।

ନିରଂଜନ ଆଉ ସମ୍ଭାଳି ହୋଇ ସିଂହାସନ ପଛରେ ବସିପାରିଲ ନାହିଁ । ପୁଣି ଆଉ ଥରେ ରଜାଙ୍କୁ ଛୁଆଁଲେଇ କହିବା ପାଇଁ ତା'ର ଘୋର ଇଚ୍ଛା ହେଲ । ସେଇଥିପାଇଁ ସିଂହାସନ ପଛରେ ଠିଆ ହୋଇପଡ଼ି କହିଲ,

ନିରଂଜନ ॥ କାଗଜପତ୍ର, ସେ ଫେର୍ ରଜାଘରିଆ—

ରାଜା ଚମକି ପଡ଼ିଲେ । ଟିକଏ ଆଗରୁ ଶୁଣିଥିବା ସେଇ ଶବ୍ଦ, ଅବିକଳ ସେଇ ଗଳା, ସେ ତରକି ଯାଇ ଚିତ୍କାର କରି ଉଠିଲେ,

ରାଜା ॥ ପୁଣି ?

ମନ୍ତ୍ରୀ ॥ କ'ଣ ହେଲ, କ'ଣ ହେଲ ହୁମୁଁ ?

ରାଜା ॥ କିଏ କହିଲ ଏ କଥା ?

ମନ୍ତ୍ରୀ ॥ ( ସେନାପତିଙ୍କୁ ) କିଏ କହିଲ ?

ସେନାପତି ॥ ( ସାଧବଙ୍କୁ ) କାହାକୁ କହିଲ ?

ମାଧବ ॥ ( କଣ୍ଟୁଆଳକୁ ) କେମିତି କହିଲ ?

କଣ୍ଟୁଆଳ ॥ ( ମନ୍ତ୍ରୀଙ୍କୁ ) କାହିଁକି କହିଲ ?

ନିରଂଜନ ॥ ( ଯେମିତି ସିଂହାସନ ପଛରୁ ) ବେକ କୁଣ୍ଡେଇ ହଉଥିବ !

ରାଜା ॥ ଫେର୍, ଫେର୍ କିଏ କହୁଛି, କିଏ କହୁଛି ?

ମନ୍ତ୍ରୀ ॥ ହୁମୁଁ ତ ନିଜେ କହିଲେ ।

ରାଜା ॥ ମୁଁ କହିଲି ? କାହିଁ ? କେତେବେଳେ ?

ମନ୍ତ୍ରୀ ॥ କଥାଟା ତ ସିଂହାସନ ଆଡ଼ୁ ଶୁଭିଲା ।

ସେନାପତି ॥ ସିଂହାସନ ଆଡ଼ୁ କେବଳ ହୁମୁଁଙ୍କ କଥା ଛଡ଼ା ଆଉ କାହାର କଥା ଶୁଭେନି ।

ନିରଂଜନ ॥ ଶୁଭିଲେ ବି ଶୁଣିବା କଥା ନୁହେଁ ।

ରାଜା ॥ ଏଇଠି ଅଛୁ, ସିଏ ଏଇଠି ଅଛୁ ।

ରାଜା ଏକାବେଳକେ ରାଗ, ଅପମାନ ଆଉ ଉତ୍ତେଜନାରେ ତେଇଁଥା'ନ୍ତି । ମନ୍ତ୍ରୀ, ସେନାପତି, ମାଧବ, କଣ୍ଟୁଆଳ ଏମାନେ ବିଭିନ୍ନ ଜାଗାରେ ଖୋଜିବାର ଅଭିନୟ କଲେ । ଖାଲି ନିରଂଜନ ଠିଆ ହୋଇଥିବା ଜାଗାକୁ ଛାଡ଼ି ।

ମନ୍ତ୍ରୀ ॥ ନାଁ ହୁମୁଁ, ଏଠି କେହି ନାହାନ୍ତି ।

ସେନାପତି ॥ ବୋଧହୁଏ ସିଂହାସନ କଥା କହୁଛି ।

ରାଜା ॥ ନାଁ, ଅନ୍ୟ କେହି, ସେ କିଏ ?

ନିରଂଜନ ॥ ଲୁଚକାଳି ଖେଳ ଚାଲିଛି, ଏ ରାଜା, ମୋତେ ଛୁଅଁ, ମୋତେ ଛୁଅଁ, ମୋତେ ଛୁଅଁ ।

ରାଜା ଆଉ ସମ୍ଭାଳି ହୋଇ ରହିପାରିଲେ ନାହିଁ । ଏକା କୁଦାକେ ମଞ୍ଚରୁ ତଳକୁ ତେଇଁପଡ଼ି ଚିତ୍କାର କଲେ—

ରାଜା ॥ ହତ୍ୟାକର—ହତ୍ୟାକର—ହତ୍ୟାକର !

ରାଜାଙ୍କ ପାଟିରୁ କଥା ବାହାରିଲା ମାତେ, ଜଣ ଫୁଲେଇ ବାହାସ୍ଫୋଟ ମାରି ପାତ୍ରମନ୍ତ୍ରୀମାନେ ଏଣେତେଣେ ଘୂରି ବୁଲିଲେ । ନିରଂଜନକୁ କିନ୍ତୁ ଧରିବା କି ହତ୍ୟା କରିବା ଉଦ୍ଦେଶ୍ୟ ତାଙ୍କର ମୋଟେ ନଥିଲା ।

ନିରଂଜନ ॥ ହେ, ମୁଁ ଲୁଚିଚି, ମୋତେ ଖୋଜ ! ମୋତେ ଖୋଜ ! ମୋତେ ଖୋଜ !

ରାଜା ॥ ଖୋଜ !

ନିରଂଜନ ॥ ଖୋଜ !

ପାତ୍ରମନ୍ତ୍ରୀମାନେ ଯିଏ ଯୋଉଠି ଠିଆ ହୋଇଥିଲେ, ସେଇଠି ହାମୁଡ଼େଇ ପଡ଼ିଲେ । ଯେମିତି ନିରଂଜନ ଏଇ ଭୂଇଁରେ କୋଉଠି ଲୁଚି ରହିଚି । ସେଇପରି ହାମୁଡ଼େଇ ହାମୁଡ଼େଇ, ଘୁଞ୍ଚୁରି ଘୁଞ୍ଚୁରି ଖୋଜିବାର ଅଭିନୟ କରୁଥିଲେ ।

ରାଜା ॥ ଖୋଜ ! ଖୋଜ ! ସକାଳ ସୁଦ୍ଧା ମୁଁ ତା'ର ମୁଣ୍ଡ ଚାହେଁ, ଖୋଜ !

ସେମାନେ ସେମିତି ଖୋଜୁଥିଲେ । ରାଜା ସେମାନଙ୍କୁ ତେମିତି ତେମିତି ପକାଇ ଛାଡ଼ି ଦରବାର ତ୍ୟାଗ କଲେ । ସେ ଚାଲିଯିବା ମାତ୍ରେ ଏମାନେ ଖୋଜିବା ବନ୍ଦ କଲେ । ଆଉ ଝାଡ଼ ଝୁଡ଼ ହୋଇ ଉଠିଲେ । ଠିଆ ହୋଇ କିଛି ସମୟ ରାଜାଙ୍କ ଯିବା ବାଟକୁ ଚାହିଁ ରହିଲେ । ତା' ପରେ ମନ୍ତ୍ରୀ ନିରଂଜନକୁ ଡାକ ପକେଇଲେ—

ମନ୍ତ୍ରୀ ॥ ଏଥରବାହାର ଆସ !

ନିରଂଜନ ଦେଖାକୁ ଧରି ତା' ଲୁଚିବା ଜାଗାରୁ ବାହାରି ଆସିଲା ଆଉ କୌତୁକ କରିବା ପାଇଁ ଦେଖାଇ

ହାତ ଧର ମନ୍ତ୍ରୀ ଦେହରେ ଲଗେଇ ଦବ ବୋଲି ବସିଲା । ମନ୍ତ୍ରୀ ଆଡ଼େଇ ଆଡ଼େଇ ବୁଲିଲେ ।.

ମନ୍ତ୍ରୀ ॥ ନାଇଁ, ନାଇଁ, ଛୁଅଁ ନାହିଁ ।

ନିରଂଜନ ॥ ଅଲବତ୍ ଛୁଇଁବ । ସେଇଆ କରିବା ପାଇଁତ ମୁଁ ଆସିଚି ।

ସେନାପତି ॥ ସେ'ତ କଥା କହୁନ ।

ନିରଂଜନ ॥ ତାକୁ କଥା କୁହେଇବାକୁ ପଡ଼ିବ ।

ମନ୍ତ୍ରୀ ॥ କେମିତି ?

ନିରଂଜନ ॥ ସେ କଥା ମୁଁ ଜାଣିଥିଲେ, ତମମାନଙ୍କ ପାଖକୁ ଆସିଥା'ନ୍ତି କାହିଁକି ? ଆମେ ସମସ୍ତେ ଚେଷ୍ଟା କଲେ ସେ କଥା କହିବ ।

ଏହି ସମୟରେ ଦୂରରୁ ରାଣୀଙ୍କର କଣ୍ଠସ୍ୱର ଶୁଭିଲା । ତାହା ଯେପରି ଶାଣିତ ସେହିପରି ଆକୁଳ ।

ରାଣୀ ॥ କୁଆଡ଼େ ଗଲେ, କୁଆଡ଼େ ଗଲେ ସେମାନେ ?

ରାଣୀଙ୍କ କଣ୍ଠସ୍ୱର ଶୁଣି ପାତ୍ରମନ୍ତ୍ରୀମାନେ ଚମକି ପଡ଼ିଲେ । ତାଙ୍କର ଧାରଣା ହେଲା ରାଜାଙ୍କ ପରି, ରାଣୀ ମଧ୍ୟ ନିରଂଜନ ଏବଂ ଦେବୀଙ୍କୁ ପାଇଲେ ସେମାନଙ୍କର କ୍ଷତି କରିପାରନ୍ତି । ତେଣୁ ନିରଂଜନ ଏବଂ ଦେବୀଙ୍କୁ ବସେଇ ଦେଇ ଘରପାଖରେ ତାକୁ ଘେରି ଠିଆ ହେଲେ । କିଛିଏ ପରେ ରାଣୀ ଆସିଲେ ଏବଂ ଦେବୀ ଏବଂ ନିରଂଜନଙ୍କୁ ନ ପାଇ ହତାଶରେ କହିଲେ,

ରାଣୀ ॥ କାହିଁ, କୋଉଠି ସେମାନେ ?

ମନ୍ତ୍ରୀ ॥ କାହିଁ, କୋଉଠି ? କେହି ତ ନାହାନ୍ତି ।

ସେନାପତି ॥ ସାରା ରାଜ୍ୟଟା ଆଜି ଖୋଜି ଆସିଲି, ସେମାନେ ନାହାନ୍ତି ।

ରାଣୀ ॥ ତା'ହାଲେ ସେମାନେ ବଞ୍ଚିଛନ୍ତି !

ମନ୍ତ୍ରୀ ॥ ମହାରାଣୀ କାହାକଥା କହୁଛନ୍ତି ?

ରାଣୀ ॥ ସେ ଦୁଇଜଣ ଆସିଲେ । ଅନେକ ଭାବିବାକୁ ଦେଇଗଲେ । ସେମାନେ ଆସିବାରେ ଯେମିତ ବାହାରର ପବନ ପଶି ଆସିଲା ।

ସେନାପତି ॥ ମହାରାଣୀ ତ ଆଜ ଅନେକ କଥା କହୁଚନ୍ତି !

ରାଣୀ ॥ କାରଣ ସେମାନେ ଆସିଥିଲେ ।

ମନ୍ତ୍ରୀ ॥ ମହାରାଣୀ କ'ଣ ସେଇ ଦୁ'ଜଣଙ୍କ କଥା କହୁଚନ୍ତି ?

ସେନାପତି ॥ ନିରଂଜନ ଆଉ ଦେବା ?

ରାଣୀ ॥ ହଁ, ନିରଂଜନ ଆଉ ଦେବା ।

ସେନାପତି ॥ ( ଦ୍ୱିଧାରେ ) ସେମାନେ ତ—

ରାଣୀ ॥ ଏ ରାଜା ଆମ ସମସ୍ତଙ୍କର ଗଳା ଚିପି ଦେଇଚି !

ମନ୍ତ୍ରୀ ॥ ( ବିସ୍ମୟରେ ) ମହାରାଣୀ !

ରାଣୀ ॥ ପୁତୁଳକା କରିଦେଇଚି ।

ସେନାପତି ॥ ( ବିସ୍ମୟରେ ) ମହାରାଣୀ !

ରାଣୀ ॥ ଓଟମୁହାଁ କରିଦେଇଚି ।

କଣ୍ଟିଆଳ ॥ ରାଜ୍ୟସାରା ଶବଗୁଡ଼ାକ ବିଷ୍ଟିହୋଇ ପଡ଼ିଚନ୍ତି । ପଚି ଗନ୍ଧେଇଲେଣି ।

ମାଧବ ॥ କହୁଚି କ'ଣ ନା ଗଧଠାରୁ କୁଆଡ଼େ ଓଟ ଜନ୍ମହୁଏ !

ରାଣୀ ॥ ଠିକ୍ ସେତିକବେଳେ ସେମାନେ ଆସିଚନ୍ତି ।

ମନ୍ତ୍ରୀ ॥ ନିଜମୁହଁ ଦେଖିନଥିଲୁ, ଏବେ ଦେଖୁଚୁଁ । ଇସ୍ କି କଦର୍ଯ୍ୟ ଦେଖାଯାଉଚି ଓଟମୁହଁଟା ।

ରାଣୀ ॥ ଓଟ—ଓଟ—ଓଟ । ଆମେ ସମସ୍ତେ ଓଟ ! ନହେଲେ କଣ୍ଢେଇ ।

ମନ୍ତ୍ରୀ ॥ ରଜାର ଖିଆଲର କଣ୍ଢେଇ ।

ନିରଂଜନ ଆଉ ପାତ୍ରମନ୍ତ୍ରୀଙ୍କ ଘେରଭିତରେ ସ୍ଥିର ହୋଇ ରହିପାରିଲ ନାହିଁ । ଘେରଭାଙ୍ଗି, ଏମାନଙ୍କୁ ଠେଲିଦେଇ, ଦେବୀର ହାତଧରି ପଦାକୁ ବାହାରି ଆସିଲ ।

ନିରଂଜନ ॥ ଆମେ ଏଇଠି

ରାଣୀ ॥ ତମେ ଏଇଠି ଅଛ ! ଏବେ ବି ତମ ମୁଣ୍ଡ ଅଛି ?

ନିରଂଜନ ॥ ହଁ, ଗଣ୍ଡିରୁ ମୁଣ୍ଡଟା ଅଲଗା ହୋଇନାହିଁ ।

ରାଣୀ ॥ ଆମେ ସମସ୍ତେ ତମ ସାଙ୍ଗରେ ଅଛୁଁ ।

ମନ୍ତ୍ରୀ ॥ ଆମେ ସମସ୍ତେ ।

ରାଣୀ ॥ ସମସ୍ତେ, ଓଟମୁହାଁ ଆଉ କଣ୍ଢେଇମାନେ । ଆମେ ସମସ୍ତେ ଆମେ ସମସ୍ତେ ।

ସମସ୍ତେ ॥ ( ଏକ ସ୍ୱରରେ ) ସମସ୍ତେ

ନିରଂଜନ ଏମାନଙ୍କ କଥାରେ ଉତ୍ତେଜିତ ହୋଇପଡ଼ିଲ । ସେତେବେଳକୁ ଦେବୀ ତଳେ ବସିପଡ଼ି ସେଇ ଶବ୍ଦଚିତ୍ର ଅଭ୍ୟାସରେ ଚଟାଣ ଉପରେ ଗାର ଟାଣୁଥିଲ । ନିରଂଜନ ତା ସାମନାରେ ଆଣ୍ଠୁମାଡ଼ି, ତା ମୁହଁକୁ ଟେକିଧରି, ଉତ୍ତେଜିତ ସ୍ୱରରେ କହିଲ,

ନିରଂଜନ ॥ ବସି ଲେଖୁଚ କ'ଣ ? ଟିକଏ ଅନେଇ ଦେଖ ଏମାନେ ସମସ୍ତେ ।

ରାଣୀ ॥ ତାର କଥା କହିବା ଦରକାର ?

ନିରଂଜନ ॥ ମୁଁ ଜାଣେନି । ଭାବୁଚି, ଛୁଇଁଦେଲେ ଯଦି ସବୁ ବଦଳିଯାଏ, କଥା କହିଲେ ସବୁ ହସି ଉଠିବ ।

ରାଣୀ ॥ ସେ କ'ଣ ଲେଖୁଚି ?

ନିରଂଜନ ॥ କେହି ବୁଝିପାରୁନାହାନ୍ତି । ହୁଏତ କଥା କହିଲେ ସବୁ ଜଣା ପଡ଼ିବ ।

ରାଣୀ ।। କଥା କହିବ, କଥା କହିବ, କେମିତି ?

ସମସ୍ତେ ।। ( ଏକ ସ୍ୱରରେ ) କେମିତି ?

ନିରଂଜନ ।। ହୁଏତ ସବୁ ବଦଳିଗଲେ, ସିଂହାସନ ଭାଙ୍ଗିପଡ଼ିଲେ, ରାଜାର ମୁଣ୍ଡ ସ୍ତମ୍ଭଉପରକୁ ଝୁଲିପଡ଼ିଲେ—

ରାଣୀ ।। ସେ କଥା କହିବ ?

ନିରଂଜନ ।। ହୁଏ ତ ।

ରାଣୀ ।। ସେ କିଏ ?

ନିରଂଜନ ।। ସେଇ ତିନିଜଣ ବିଜ୍ଞ ଲୋକ ବି ସେ ପ୍ରଶ୍ନ ପଚାରିଥିଲେ, କିନ୍ତୁ ଉତ୍ତର ପାଇନାହାନ୍ତି ।

ରାଣୀ ।। ତାକୁ କଥା କହିବାକୁ ପଡ଼ିବ ।

ମନ୍ତ୍ରୀ ।। ଆଜି ପର୍ଯ୍ୟନ୍ତ ଆମେ କଥା କହୁଥିଲୁ କିନ୍ତୁ ଶବ୍ଦ ନଥିଲା ।

ସେନାପତି ।। ଗୀତ ଗାଉଥିଲୁ, ସ୍ୱର ନଥିଲା ।

କଟୁଆଳ ।। ନିଜ ନିଜ ଭିତରେ ଯୁଦ୍ଧକରି ରାସ୍ତାରେ ପଡ଼ିଥିବା ଶବ ପରି ଆମ ଦେହର ବି ଦୁର୍ଗନ୍ଧ ଥିଲା ।

ସାଧବ ।। ଗର୍ଭଠାରୁ ଓଟ ଜନ୍ମ ହେଉଥିଲା ।

ପ୍ରହରୀ-୧ ।। ଆମେ କ୍ରୀତଦାସ ଥିଲୁ ।

ପ୍ରହରୀ-୨ ।। ଆମ ହାତପାଦ ବନ୍ଧାଥିଲା ।

ନିରଂଜନ ।। ଯାହା ତମ ରାଜା ତମ ପାଖରୁ କାଢ଼ି ନେଇଛି, ଏଇ କଥା କହିଲେ ସବୁ ଗୋଟି ଗୋଟି ଗୋଟିକରି ଫେରିଆସିବ ।

ରାଣୀ ।। ସେ କ'ଣ ଆମ ଅବରୁଦ୍ଧ ସ୍ୱରର ପ୍ରତୀକ ?

ମନ୍ତ୍ରୀ ।। ନା, ଛନ୍ଦହୀନ ଗୀତର ସ୍ୱର ?

ନିରଂଜନ ।। କଥା କହିଲେ ସବୁ ଜଣାପଡ଼ିବ ।

ରାଣୀ ।। ତାକୁ କଥା କୁହାଅ !

ନିରଂଜନ ।। ମୁଁ ପାରିନି । ଚେଷ୍ଟା କରନ୍ତୁ, ଯଦି ଆପଣମାନେ ପାରନ୍ତି ।

ନରଂଜନ ଦେବୀର ହାତଧରି ତା' ବସିଥିବା ଯାଗାରେ ଠିଆ କରାଇଦେଲ ଯେପରି ସେ ସମସ୍ତଙ୍କୁ ଆହ୍ୱାନ କରୁଥିଲ, ଏଇ ଆଶ୍ଚର୍ଯ୍ୟ ଶକ୍ତି ସମ୍ପନ୍ନ ଝିଅଟିକୁ ଖୋଦ୍ ଭଲ ଭାବରେ ନିରୀକ୍ଷଣ କରିବା ପାଇଁ । ଜଣ ଜଣ କରି ସମସ୍ତେ ଅଗେଇ ଆସି ଦେବୀଙ୍କୁ ନିରୀକ୍ଷଣ କରୁଥିଲେ ଏବଂ ଚମକି ପଡ଼ୁଥିଲେ । ଯେମିତି ସେଇ ମୁହୂର୍ତ୍ତରେ ଦେବୀର ଅଖି ଦୁଇଟି ଏମାନଙ୍କର ହୃଦୟର ଦର୍ପଣ ହୋଇ ଯାଇଥିଲ । ପ୍ରଥମେ ରାଣୀ ଆସିଲେ । ତାପରେ ପର୍ଯ୍ୟାୟକ୍ରମେ ମନ୍ତ୍ରୀ ସେନାପତି ଇତ୍ୟାଦି ।

ରାଣୀ ॥ ( ଦେବୀର ଆଖିକୁ ଦେଖି ଦେଖି ) ଇଏ କି'ଣ ? ତା' ଆଖିରେ, ତା ଆଖିର ପ୍ରତିଫଳନରେ ମୁଁ ଦେଖିପାରୁଚି ଗୋଟାଏ କାଚର ସିନ୍ଦୁକ । ମୁଁ ତା'ରି ଭିତରେ ପଡ଼ି ଛଟପଟ ହଉଚି ।

ମନ୍ତ୍ରୀ ॥ କାନ୍ଥରେ ଅସଂଖ୍ୟ ଓଠର ମୁଖା ଟଙ୍ଗାହେଇଚି । ମୁଁ ତା' ଆଖିରେ ତା'ରି ଛବି ଦେଖୁଚି ।

ସେନାପତି ॥ ମୋ' ତରବାରୀଟା ଝୁଲୁଚି । ତାକୁ ଅଣିବାକୁ ମୋ'ହାତ ପାଉନାହିଁ ।

କଟୁଆଳ ॥ ରାଜା ସିଂହାସନରେ ବସିଚନ୍ତି । ହାତରେ ଚାବୁକ ।

ସାଧବ ॥ ସେ ଆମକୁ ଡାକୁଚନ୍ତି ।

ପ୍ରହରୀ-୧ ॥ ଆମେ ଯିବୁନି, ଆମେ ଯାଇପାରିବୁନି ।

ପ୍ରହରୀ-୨ ॥ ରାଜାର ଖଣ୍ଡାତଳେ ଆମେ ବେକ ପାତି ଦେବୁନି ।

ନରଂଜନ ॥ ଯୋଡ଼ାଏ ଆଖିରେ ଏତେ ଛବି ।

ରାଣୀ ॥ ସେ ଛବି ଆମର । ସେ ଆମ ଦୁଃଖ, ଯନ୍ତ୍ରଣା, ଆଉ ଅସହାୟତାର ଛବି । ଏ ସିଂହାସନ ଭାଙ୍ଗିଯିବ । ରାଜାର ମୁଣ୍ଡ ଛାତଉପରକୁ ଝୁଲିପଡ଼ିବ—

ସମସ୍ତେ ॥ ( ଏକ ସ୍ୱରରେ ) ସେ କଥା କହିବ ।

ଏଇ ସମୟରେ ତୁର୍ଯ୍ୟନାଦ ହେଲା । ଘଣ୍ଟା କାହାଳି ଓ ଗୀତ ବାଜାର ଧ୍ୱନି ଭାସି ଆସିଲା । ଘୋଷକ ରାଜାଙ୍କ ଆସିବାର ଘୋଷଣା କଲା । ଏମାନେ ସମସ୍ତେ ସନ୍ତ୍ରସ୍ତ ହୋଇପଡ଼ିଲେ ।

ଘୋଷକ ॥ ( ଅନ୍ତରାଳରୁ ) ମହାମହିମ ସମ୍ରାଟ ଉତ୍କଳାଧିପତି ମହାରାଜ ସୁରେନ୍ଦ୍ର ପ୍ରତାପଙ୍କର ଦରବାରକୁ ବିଜେ——

ନିରଂଜନ ॥ ରାଜା ଆସିଲେ, ରାଜା ଆସୁଛନ୍ତି ।

ରାଣୀ ॥ ରାଜା ଯଦି ତମ ମୂର୍ତ୍ତି'ଜଣଙ୍କୁ ଦେଖନ୍ତି, ତାହେଲେ କିଛି ଘଟିଯିବା ପୂର୍ବରୁ ସେ ତୁମକୁ ହତ୍ୟାକରିବେ । ଲୁଚିଯାଅ !

ନିରଂଜନ ॥ ଆପଣ ବିଶ୍ୱାସ କରନ୍ତୁ, କିଛି ଗୋଟାଏ ଘଟିବ, ଘଟିବାକୁ ଯାଉଛି ?

ରାଣୀ ॥ ହଁ । କିଛି ଗୋଟାଏ ଘଟିବ, ଘଟିବାକୁ ଯାଉଛି ।

ନିରଂଜନ ॥ ତା'ହେଲେ ମୋତେ ଯିବାକୁ ପଡ଼ିବ ।

ରାଣୀ ॥ କୋଉଠିକି ?

ନିରଂଜନ ॥ ସେଇ ତିନି ଜଣଙ୍କ ପାଖକୁ ।

ରାଣୀ ॥ ତମେ ଆମକୁ ଏକା ଛାଡ଼ିଦେଇ ଚାଲିଯିବ ?

ନିରଂଜନ ॥ ନା, ଦେବୀଙ୍କୁ ଏଇଠି ଛାଡ଼ିଦେଇଯିବି ।

ନିରଂଜନ ଦେବୀଙ୍କୁ ଖୋଜିଲା, ଏପାଖ ସେପାଖ ଅନେଇ କୋଉଠି ଲୁଚେଇବ ଭାବୁଥିଲା । ତାପରେ ସ୍ଥିର ସିଦ୍ଧାନ୍ତରେ ପହଞ୍ଚି ଦେବୀର ହାତଧରି ମଞ୍ଚ ଉପରକୁ ଉଠିଗଲା ଏବଂ ଦେବୀଙ୍କୁ ସିଂହାସନ ପଛରେ ଲୁଚେଇ ଦେଲା । ତା ପରେ ସିଂହାସନ ପାଖରେ ଠିଆ ହୋଇ ସମସ୍ତଙ୍କୁ ଉଦ୍‌ବୋଧନ ଦେଇ କହିଲା ।

ନିରଂଜନ ॥ ଏଇଠି, ଆପଣଙ୍କ ଭିତରେ, ମୁଁ ତାକୁ ଛାଡ଼ି ଦେଇଗଲି ।

ଆପଣ ସମସ୍ତଙ୍କ ବିବେକ ଏବଂ ଚେତନାକୁ ବଞ୍ଚେଇ ରଖିବ ସିଏ, ମୁଁ ଫେରିବା ପର୍ଯ୍ୟନ୍ତ । ମୁଁ ଆସୁଚି ।

ନିରଂଜନ ଚାଲିଗଲା । କିଛି ମୁହୂର୍ତ୍ତି ପାଇଁ ସମସ୍ତେ ନିର୍ବାକ ଏବଂ ନିସ୍ତବ୍ଧ ହୋଇଗଲେ । ଯେପରି ଘଟଣା-ସବୁ ସେମାନଙ୍କ ଆୟତ୍ତ ଭିତରେ ଘଟୁନଥିଲା ଏବଂ ଯାହା ଘଟୁଥିଲା ତାହା ସେମାନଙ୍କ ପାଇଁ ଅପ୍ରତ୍ୟାଶିତ ଏବଂ ଅପରିଚିତ ଥିଲା ।

ରାଣୀ ।। ନିରଂଜନ ଚାଲିଗଲା ।

ସେନାପତି ।। ଫେରିଆସିବ ବୋଲି ତ କହିଗଲା ।

ରାଣୀ ।। ସେ ଯଦି ନ ଆସେ ?

ଏଇ ସମୟରେ ରଜାଙ୍କର ଗର୍ଜନ ଶୁଭିଲା ଅନ୍ତରାଳରୁ । ସେ ଗର୍ଜି ଗର୍ଜି ଆସି ଏ ସମସ୍ତଙ୍କ ସାମନାରେ ପହଞ୍ଚିଗଲେ ଏବଂ ରାଣୀଙ୍କୁ ଏମାନଙ୍କ ଗହଣରେ ଦେଖି ଆହୁରି ଜୋରରେ ରାଗିଗଲେ ।

ରାଜା ।। କିଏ ? କିଏ ଆସିବ ? ଆରେ, ମୋ ଗଲାପରେ କି ସିଂହା-ସନ ଉଠିନାହିଁ ? କ'ଣ କରୁଚ ତମେମାନେ ?

ମନ୍ତ୍ରୀ ।। ମହାରାଜ ଆସିବେ ବୋଲି ସିଂହାସନ ପଡ଼ିରହିଚି ପ୍ରଭୁ ।

ରଜା ମଞ୍ଚ ଉପରକୁ ଉଠିଗଲେ । ସିଂହାସନକୁ କିଛି ସମୟ ଅନାଇ ରହିଲେ, ଯେପରି ସିଂହାସନ ଏଇ ମୁହୂର୍ତ୍ତରେ ତାଙ୍କ ନିକଟରେ ଏକ ଅପରିଚିତ ବସ୍ତୁ ହୋଇଉଠିଚି । ସେ ରାଣୀଙ୍କୁ ଉଦ୍ଦେଶ୍ୟ କରି କହିଲେ,

ରାଜା ।। ଏ ସିଂହାସନ କଥା କହୁଚ ? କାହିଁକି କହୁଚ ?

ରାଣୀ ।। ବତିଶ ସିଂହାସନ ବୋଲି ଗୋଟିଏ ସିଂହାସନ ଥିଲା । ସେ ସିଂହାସନରେ ବତିଶଟି ପୁତ୍ତଳିକା ଥିଲେ । ଠିକ୍ ମୋ'ରି ପରି ବତିଶ ଜଣ । ସେ ସିଂହାସନରେ ଭୋଜରାଜ

ବସିବାକୁ ଗଲାବେଳେ ପୁତ୍ତଳକାମାନେ ତାଙ୍କୁ ବସିବାକୁ ଦଉନଥିଲେ ।

ରାଜା ॥ କାଲୁ ମୁଁ ବସିବ, ବସିଥିବ । କୌଣସି ପୁତ୍ତଳକା ମୋତେ ସିଂହାସନରୁ ହଟେଇ ଦେଇପାରିବେ ନାହିଁ ।

ରାଣୀ ॥ କଣ୍ଢେଇମାନେ ନଷ୍ଟ ହେଲେ ସିଂହାସନରେ କେହି ବସିପାରିବେ ନାହିଁ ।

ରାଜା ॥ ( ସିଂହାସନ ଉପରେ ବସିପଡ଼ି ) ହେଇ ଦେଖ ମୁଁ ବସିଲି । ଦେଖ, ସିଂହାସନ ଆଉ କଥା କହୁନି । ରାଣୀ, ସିଂହାସନ ପାଖକୁ ଆସ ।

ରାଣୀ ॥ କାଲୁ... ... ...

ରାଜା ॥ ମୋର ଆଦେଶ

ରାଣୀ ଏକାନ୍ତ ଅନିଚ୍ଛାସତ୍ତ୍ୱେ ରାଜାଙ୍କ ଆଦେଶର ନିଷ୍ଠୁରତାରେ ସିଂହାସନ ଆଡ଼କୁ ଅଗେଇଗଲେ । ଏବଂ ସିଂହାସନ ପାଖରେ ଠିଆହେଲେ ।

ରାଣୀ ॥ ହଁ, ମାନିବାକୁ ପଡ଼ିବ ।

ରାଜା ॥ ତମେ କିଏ ?

ରାଣୀ ॥ ପୁତ୍ତଳକା ।

ରାଜା ॥ ଜାତୀୟ ସଂଗୀତ ।

ମନ୍ତ୍ରୀ ॥ ହଁ, ଜାତୀୟ ସଂଗୀତ ।

ମନ୍ତ୍ରୀ, ସେନାପତି, ସାଧବ ଓ କୋଟୁଆଳ ନିଜ ନିଜ ଜାଗାରେ ଯାଇ ଠିଆହେଲେ ଏବଂ ନିର୍ଜୀବ ଭଳି ଆଣ୍ଠେଇପଡ଼ି ଜାତୀୟ ସଂଗୀତ ବୋଲିବାକୁ ଲାଗିଲେ । ଏ ସଂଗୀତରେ କୌଣସି ଜୀବନ ନଥିଲା । କିମ୍ବା ଛନ୍ଦ ବା ଯତିପାତ ନଥିଲା ।

ଜାତୀୟ ସଂଗୀତ

ମନ୍ତ୍ରୀ ॥ ଓଟପର ଗୀତ ନାହିଁରେ ଭାଇ

ସେନାପତି ॥ ତୋ' କଣ୍ଢ ଆଖି ଗାଲ ସୁନ୍ଦର

ମାଧବ ॥ ଚାଲିନ୍ତ ବାଲରେ ଯା' ଶୋଇଯା'

କଟୁଆଳ ॥ କହେ ରଜାସୁର—କହେ ରଜାସୁର—କହେ ରଜାସୁର—

କଟୁଆଳର ଶେଷପଦଟି ଆଦୌ ମନେ ପଡ଼ୁ ନଥିଲା । ଯେତେ ଚେଷ୍ଟା କଲେ ବି ସେ ଶେଷ ପଦଟି ପୂରଣ କରି ପାରୁ ନଥିଲା । ସେ ଯେତେବେଳକୁ ଲମ୍ବୁରେ ଅଣଲାଣି । ରଜା ଏ ଅବ୍ୟବସ୍ଥା ଦେଖି ରାଗରେ କମ୍ପମାନ । ସେ ଗର୍ଜି ଉଠିଲେ ।

ରଜା ॥ ବନ୍ଦକର, ବନ୍ଦକର, କ'ଣ ହଉଛି ଏସବୁ ।

ରାଣୀ ॥ ( ହସି ଉଠିଲେ )

ରଜା ॥ ( ରାଣୀଙ୍କ ଉପରେ ରାଗିଯାଇ ) ହସ ବନ୍ଦକର ।

ରାଣୀ ॥ ( ସେମିତି ହସି ହସି ) ଏମାନେ ବି ସବୁ କଣ୍ଢେଇ ହେଇଗଲେ ।

ରାଜା ॥ ( ପାତ୍ରମନ୍ତ୍ରୀ ମାନଙ୍କୁ ) ଯାଅ, ଯାଅ ତମେ ସବୁ । ଯାଅ, ଚାଲିଯାଅ ।

ରାଣୀ ॥ ( ହସୁ ହସୁ ) ଯାଅ, କଣ୍ଢେଇମାନେ, ସିଂହାସନରେ ଖଞ୍ଜି ହୋଇଯାଅ, ରାଜା ବିକ୍ରମାଦିତ୍ୟଙ୍କ ବତିଶ ସିଂହାସନ, ଯାଅ !

ରାଜା ॥ ହଁ, ଯାଅ । ମୋର ତୁମ କାହାରିକୁ ଦରକାର ନାହିଁ । ଯାଅ, ଚାଲିଯାଅ । ମୋ'ର ସିଂହାସନ ଥିଲେ ତମଭଳି ଓଟମୁହାଁ କେତେଜଣ ଆସିବେ । ମୋ ପାଦ ଚାଟିବେ । ଯାଅ ।

ରଜାଙ୍କ ଆଦେଶ ପାଇ ପାତ୍ରମନ୍ତ୍ରୀମାନେ ଯେ ଯୁଆଡ଼େ ଚାଲିଗଲେ, ରଜା ଏବଂ ରାଣୀଙ୍କୁ ଏକା ଛାଡ଼ିଦେଇ । ରଜା ସିଂହାସନରେ ପୁଣି ଥଇଥାନ କରି ବସିଲେ ଏବଂ ସ୍ୱସ୍ତିରେ ନିଃଶ୍ୱାସ ମାରିଲେ ।

ରାଜା ॥ ଆଃ, କ ଆରାମ୍ !

ରାଣୀ ॥ ହଁ, ମରୁଭୂମିର ଆରାମ୍ ।

ରାଜା ॥ କ ଶୀତଳତା !

ରାଣୀ ॥ ଶ୍ମଶାନର ଶୀତଳତା ।

ରାଜା ॥ ତମେ ପୁଣି ଅନେକ କଥା କହୁଚ ?

ରାଣୀ ॥ ମୁଁ ତ କଥା କହୁଚ । କିନ୍ତୁ ବତିଶ ସିଂହାସନର ପୁତ୍ତଳିକା-
ମାନେ ଭୋଜରାଜାଙ୍କୁ ଗପ ଶୁଣାଉଥିଲେ ।

ରାଜା ॥ ତମେ ମୋ ଇଚ୍ଛା ଆଦେଶରେ ହସିଚ ।

ରାଣୀ ॥ ମୁଁ ତ ଖାଲି ହସୁଚ, ସେମାନେ କିନ୍ତୁ ବିଦ୍ରୁପ କରୁଥିଲେ ।

ରାଜା ॥ ତମେ ମୋ' ରାଣୀ ।

ରାଣୀ ॥ ପୁତ୍ତଳିକା ।

ରାଜା ॥ ତମେ ମୋ' ରାଣୀ

ରାଣୀ ॥ ସିଂହାସନ ପର ଗୋଟାଏ ଅଲଙ୍କାର ।

ରାଜା ॥ ପୁତ୍ତଳିକା ଛଡ଼ା ତମେ ଅନ୍ୟ କିଛି ଶବ୍ଦ କହିପାରବ ନାହିଁ ।

ରାଣୀ ॥ ପୁତ୍ତଳିକା

ରାଜା ॥ ମୁଁ ଇଚ୍ଛାକଲେ ସବୁ ବଦଳେଇ ଦେଇପାରେ ।

ରାଣୀ ॥ ଆପଣ ରାଜା ।

ରାଜା ॥ ମୁଁ ଇଚ୍ଛାକଲେ ହତ୍ୟା କରିପାରେ ।

ରାଣୀ ॥ କିନ୍ତୁ ଇଚ୍ଛାକଲେ ବଞ୍ଚେଇ ପାରିବେନି' ।

ରାଜା ॥ ମୁଁ ଇଚ୍ଛାକଲେ—ମୁଁ ଇଚ୍ଛାକଲେ—

କ'ଣ କହିବେ ବୁଝିପାରୁନଥିଲେ ରାଜା । ତାଙ୍କର ଶବ୍ଦ-
ଭଣ୍ଡାର ବୋଧହୁଏ ଶେଷ ହୋଇ ଯାଇଥିଲା । ତେଣୁ
ସେ ବାକ୍ୟ ପୂରଣ ନ କରିପାରି ଅଟକିଗଲେ । ରାଣୀ
ରାଜାଙ୍କର ଏ ଦୟନୀୟ ଅବସ୍ଥା ଦେଖି କ୍ଷୋଭ୍

ଜୋରରେ ହସିଉଠିଲେ । ରାଜା ଅପମାନିତ ହୋଇ-
ଯାଇ ଚତ୍କାର କଲେ ।

ରାଜା ॥ ହସ ବନ୍ଦ କର ।

ରାଣୀ ॥ ( ଆହୁରି ଜୋର୍‌ରେ ହସିଉଠିଲେ )

ରାଜା ॥ ମୁଁ କହୁଚି, ମୋ'ର ଇଚ୍ଛାହିଁ ପୂରଣ ହବ ।

ରାଣୀ ॥ ( ସେମିତି ହସୁଥାନ୍ତି )

ରାଜା ॥ ରାଣୀ !

ରାଣୀ ॥ ( ଖୁବ୍ ଜୋର୍‌ରେ ହସିଉଠିଲେ )

ରାଜା ॥ ସିଂହାସନରୁ ସିଂହାସନ ପାଇଁ ମୋର ଆଦେଶ ! ଓଟମୁହାଁ
ମାନେ ହିଁ ମୋ'ର ଶ୍ରେଷ୍ଠପ୍ରଜା । ଏବଂ ମୁଁ ସେମାନଙ୍କର
ଶ୍ରେଷ୍ଠ ରାଜା । ମୋ ପୂର୍ବରୁ କେହି ନଥିଲେ । ମୋ'ପରେ
କେହି ଆସିବେନି । ଇଏ ମୋ'ର ଆଦେଶ ।

ରାଣୀଙ୍କର କଲୁ ହସ ଆହୁରି ଜୋର୍‌ରେ ବଢ଼ି
ଚାଲିଥିଲା । ଯେପରି ସେ ହସ ରାଜାଙ୍କର ସମସ୍ତ କର୍ତ୍ତୃତ୍ୱ,
ସମସ୍ତ ନିଷ୍ଠୁରତାକୁ ଏକ ପ୍ରଚଣ୍ଡ ଉପହାସ । ରାଜାଙ୍କର
ଆସ୍ଫାଳନ ଏବଂ ରାଣୀଙ୍କର ହସ ଯେପରି ଆଉ ବନ୍ଦ
ହେବନି । ଏବଂ ଏଇ ପ୍ରକ୍ରିୟା ମଧ୍ୟରେ, ମଞ୍ଚ ଅନ୍ଧାର
ହେଲା ।

ଏକେତ ଅନ୍ଧାର ଜଙ୍ଗଲ, ସେଥିରେ ପୁଣି କଳା କଟି-
କଟିଆ ଅନ୍ଧାର । ସେଇ ଅନ୍ଧାର ଭିତରେ ଜଣେ
ଲୋକ ପଡ଼ି ଉଠି ଧାଉଁଛି । ମଝିରେ ମଝିରେ ସେ
ଝୁଣ୍ଟି ପଡ଼ି ବସି ପଡ଼ୁଛି, ପୁଣି ଟିକଏ ଦମ୍ ନେଇ
ଉଠି ପଡ଼ି ଦ୍ରୁତ ଗତିରେ ଚାଲୁଛି । ଝାପ୍‌ସା ଝାପ୍‌ସା
ହୋଇ ଲୋକଟାର ମୁହଁଟା ଟିକଏ ଟିକଏ ଦେଖା
ଯାଉଛି । କେହି ଚିହ୍ନା ଲୋକ, ଟିକଏ ନଜରେଇ
ଠାଉରି ନେଲେ, ଜାଣିପାରିବ, ସେ ଲୋକଟା ଆଉ
କେହି ନୁହେଁ ନିରଂଜନ । ନିରଂଜନ ଯାଇ ଗୁମ୍ଫା
ପାଖରେ ପହଞ୍ଚିଥିଲା । ଗୁମ୍ଫା ଭିତରକୁ ମୁହଁ ଗଳେଇ
ଡାକ ଛାଡ଼ିଲା,

ନିରଂଜନ ॥ ମୁଁ ଆସିଛି । ଶୁଣି ପାରୁଛନ୍ତି, ମୁଁ ନିରଂଜନ । ମୁଁ ଖବର ଆଣିଛି ।

ଗୁମ୍ଫା ଭିତରୁ ବାହାରି ଆସିଲେ ବିଶାଳବାହୁ, ଧୁରନ୍ଧର
ଆଉ ବିଦ୍ୟାଧର । ପ୍ରଥମେ ସେ ବିଶ୍ୱାସ କରି ପାରୁ
ନଥିଲେ, ନିରଂଜନକୁ ଦେଖିବେ ବୋଲି । ତା'ପରେ
ଆନନ୍ଦ ଆଉ ଉଲ୍ଲାସରେ ସେମାନେ ନିରଂଜନକୁ
କୁଣ୍ଢେଇ ପକେଇଲେ ।

ବିଦ୍ୟାଧର ॥ ଖବର ? କି ଖବର ଆଣିଛ ?

ବିଶାଳବାହୁ ॥ ଶୁଭ ନା ଅଶୁଭ ଖବର ?

ଧୁରନ୍ଧର ॥ ସେ ଖବର କ'ଣ ଆମ ମୁକ୍ତିର ଖବର ?

ନିରଂଜନ ॥ ସବୁ ବଦଳି ଯାଉଛି । ଭେଳକି ଲାଗିଲା ପରି ଗୋଟିକ ପରେ ଗୋଟିଏ ଓଟମୁହାଁ ମଣିଷ ପାଲଟି ଯାଉଛନ୍ତି ।

ବିଦ୍ୟାଧର ॥ ଦେଖା କଥା କହୁଛ ? କ'ଣ କହୁଛ ? କୋଉ ଭାଷାରେ ?

ନିରଂଜନ ॥ ନାଁ, ସେଇ ରୂପ୍‌ରୂପ୍ । ଠିକଏ ଫୁରସତ୍‌ ପାଇଲେ ବସିପଡି
ଗାଉ ଥାଉଛି ।

ବିଶାଳବାବୁ ॥ ତା'ହେଲେ ?

ଧୁରନ୍ଧର ॥ କେମିତି ବଦଳିଲେ ସେମାନେ ?

ନିରଂଜନ ॥ ଠିକ୍ ଯେମିତି ମୁଁ ବଦଳିଯାଇଥିଲି, ତା' ପାଖରେ ରହି ।
ତା'ରୁଆଁ ସଂକ୍ରାମକ ରୋଗ ପରି ସମସ୍ତଙ୍କ ଆଡ଼କୁ ମାଡ଼-
ଗଲା । ତା'ପରେ ଚାଲିଚି ତ ହଟଚମଟ ପାଲା !

ବିଦ୍ୟାଧର ॥ ତା'ହେଲେ ତମେ କାହିଁକି ଆସିଚ ?

ନିରଂଜନ ॥ କିଛି ସମୟ ଛୁଟି ନେଇ ଆସିଚି, ଆପଣମାନଙ୍କ ପାଖରେ
ମୋ'ର ବିଶେଷ ଦରକାର ।

ବିଶାଳବାବୁ ॥ କ'ଣ ଦରକାର ?

ଧୁରନ୍ଧର ॥ ଆମେ ତୁମକୁ କେମିତି ସାହାଯ୍ୟ କରିପାରିବୁଁ ?

ନିରଂଜନ ॥ ଆପଣଙ୍କ ଭିତରୁ କେହି ଗୀତ ଲେଖି ପାରନ୍ତି ?

ବିଦ୍ୟାଧର ॥ ଗୀତ ?

ନିରଂଜନ ॥ ବୋଲଯାଉଥିବା ଓଟିକ ଜାତୀୟ ସଂଗୀତ ପରି ।

ବିଶାଳବାବୁ ॥ ଠିକ୍ ସେମିତି ?

ନିରଂଜନ ॥ ନାଁ, ତାକୁ ଓଲଟେଇ ।

ଧୁରନ୍ଧର ॥ କାହିଁକି ?

ନିରଂଜନ ॥ ଆଃ, ଲେଖି ଦିଅନ୍ତୁନା ! ଏଣିକି ଲୋକମାନେ ଏଇ ନୂଆ
ଗୀତ ଖାଲି ଗାଇବେ । ଲେଖି ଦିଅନ୍ତୁ ।

ବିଦ୍ୟାଧର ॥ ମୁଁ ଲେଖି ଦେବି ।

ନିରଂଜନ ॥ ଲେଖନ୍ତୁ, ଲେଖନ୍ତୁ । ସାହା କରିବେ, ଟିକଏ ଜଲ୍‌ଦି
କରନ୍ତୁ । ତେଣେ ଲୋକମାନେ ବଡ଼ ବିକଳ ହୋଇ ରୁହିଁ
ବସିଥିବେ ।

ବିଦ୍ୟାଧର ॥ ହଉ, ଭିତରକୁ ଆସ ।

ସେ ତିନିଜଣ ନିରଂଜନକୁ ଧରି ଗଲି ଗଲି ଗୁମ୍ଫା
ଭିତରକୁ ଚାଲିଗଲେ । ମଞ୍ଚ ଅନ୍ଧାର ।

ତେଣେ ଏତେ ସବୁ ଘଟି ଗଲଣି ସିନା, ଏଣେ କିନ୍ତୁ ଦରବାରରେ ରାଜା, ରାଣୀ ସେମିତି ଅଛନ୍ତି । ମନ୍ତ୍ରୀ, ସେନାପତି, ସାଧବ, କଟୁଆଳ କିଏ କୁଆଡ଼େ ଗଲେଣି, ରଜା ହାତଟେକି ଠିଆହୋଇଚନ୍ତି, ରାଣୀ ତାଙ୍କର କାଳାସୀ ଲଗିଲାପରି ହସୁଚନ୍ତି... ହସୁଚନ୍ତି । କେତେ-ବେଳେକେ ରାଜାଙ୍କର ହୋସ୍ ଆସିଲା । ରାଣୀଯେ ଅନେକବେଳୁ ହସୁଚନ୍ତି ସେ କଥା ମୁଣ୍ଡକୁ ଢୁକିଲା । ସେ ରାଣୀଙ୍କୁ ଆକଟ କରି କହିଲେ,

ରାଜା ॥ ହସ ବନ୍ଦକର !

କିଏ କାହାକଥା ବା ଶୁଣୁଚି । ରାଣୀ ହସ ବନ୍ଦ କଲେନି କି ରାଜାଙ୍କ ଆଦେଶ ମାନିଲେ ନାହିଁ । ରାଜା ଚ[illegible] ଆଡ଼କୁ ନଜର ପକେଇଲେ, କେହି କୁଆଡ଼େ ନାହାନ୍ତି, ଦରବାରଟା ଖାଁ ଖାଁ କରୁଚି ।

ରାଜା ॥ ଏଁ, ଏପର୍ଯ୍ୟନ୍ତ କେହି ଆସୁନାହାନ୍ତି ?

ରାଣୀ ॥ କେହି ଆସିବେନି । ଦରବାର ଖାଲି, ଆପଣ ଏକା ।

ରାଜା ॥ ଆଉ ତମେ ?

ରାଣୀ ॥ ପୁତ୍ତଳିକା ।

ରାଜା ॥ ଏ ହସ ବନ୍ଦକର ।

ରାଣୀ ॥ ଆଉ ଏ ହସ ବନ୍ଦ ହେବନି । ଗୋଟିଏ ଝରଟିଆ ସ୍ରୋତ ନଦୀ ହୁଏ । ନଦୀ ପୁଣି ସମୁଦ୍ରରେ ମିଶିଯାଏ । ସେମିତି ମୋର ଏଇ ହସ ଏକରୁ ଅନେକ ହୋଇ ଅଟ୍ଟହାସ୍ୟରେ ପରିଣତ ହେବ ।

ରଜା ॥ ମୁଁ ତା' କରିବାକୁ ଦେବ ନାହିଁ । ମୁଁ ତୁମ ସମସ୍ତଙ୍କ ତଣ୍ଟି ଚିପି ଧରିବ । ସମସ୍ତଙ୍କର ହସ ବନ୍ଦ କରିଦେବ ।

ରାଣୀ ॥ ଚେଷ୍ଟା କରି ଦେଖନ୍ତୁ ।

ରାଜା ॥ ମନ୍ତ୍ରୀ, ସେନାପତି, ସାଧବ, କଟୁଆଳ, ଦରବାର ଆରମ୍ଭ ହେଇଯାଇଚ, ଆସ ଜାତୀୟ ସଙ୍ଗୀତ ଗାଅ !

ରାଣୀ ॥ ଦରବାର ଖାଲି । ଗାଅ, ଜାତୀୟ ସଙ୍ଗୀତ କିଏ ଗାଉଚ ଗାଅ !

ରାଜା ॥ କେଉଁ ଆସିଲେନ ? ଠିକ୍ ଅଛି, ମୁଁ ନିଜେ ଜାତୀୟ ସଙ୍ଗୀତ ଗାଇବ । ରାଣୀ, ମୋ'ର ଆଦେଶ, ତୁମକୁ ବି ମୋ' ସାଙ୍ଗରେ ଜାତୀୟ ସଙ୍ଗୀତ ଗାଇବାକୁ ହବ । ଗାଅ

ଜାତୀୟ ସଂଗୀତ (ରାଜା ନିଜେ ଗାଇବେ, ରାଣୀ ହସିବେ)

ଓଟ ପରି ଜୀବ ନାହିଁରେ ଭାଇ,
ଶାନ୍ତି ତୁ ପାଇବୁ ଯା' ଓଟ ହୋଇ ।
ପିଠିରେ କୁଜଟା କି ମନୋହର,
ତୋ' ନିଷାଦ ଆଗି ଭାରି ସୁନ୍ଦର ।

ଗୀତ ଶେଷ ହେବା ଆଗରୁ ଭିତରକୁ ପଶି ଆସିଲା ନିରଂଜନ । ତା'ହାତରେ ଖଣ୍ଡେ କାଗଜ, ସେ ଉପରକୁ ଟେକି ଧରିଥାଏ । ଦରବାର ଭିତରେ କିଏ ଅଛି କି ନାହିଁ, ସେ ଖିଆଲ ତା'ର ନଥାଏ । ରାଜାଙ୍କର ଗୀତ ବନ୍ଦ, ରାଣୀଙ୍କର ହସ ବି ବନ୍ଦ । ନିରଂଜନ ନାଚ ନାଚ ଦରବାରଟାକୁ ଖେଦ ପକେଇଲା, କହୁଥାଏ,

ନିରଂଜନ ॥ ସେ ଗୀତ ନୁହେଁ, ସେ ଗୀତ ନୁହେଁ, ମୁଁ ନୂଆ ଗୀତ ଆଣିଚ, ନୂଆ ଗୀତ ।

ରାଜା ॥ କିଏ ? କିଏ ତୁମେ ?

ନିରଂଜନ ॥ ମୁଁ ନିରଂଜନ !

ତା'ପରେ ସେ ଘୃଣ ଅଙ୍କୁ ଅନେଇଲ, ଦେଖିଲ ରାଣୀ ମଞ୍ଚା ଉପରେ ଠିଆ ହୋଇଚନ୍ତି, ତାଙ୍କ ପାଖକୁ ଯାଇ, ତାଙ୍କୁ ପଚ୍ଚରିଲ,

ନିରଂଜନ ॥ ସେମାନେ କୁଆଡ଼େ ଗଲେ ? ଦେବୀ କୁଆଡ଼େ ଗଲ ?

ରାଜା ॥ ଧର, ତାକୁ ଧର, ତାକୁ ହତ୍ୟାକର ।

ରାଣୀ ମଞ୍ଚାରୁ ଓହ୍ଲେଇ ଆସିଲେ । ନିରଂଜନର ହାତ ଧରିଲେ । ରାଜା ଭାବୁଥିଲେ, ନିରଂଜନକୁ ଆଣି ରାଣୀ ତାଙ୍କ ହାତକୁ ବଢ଼େଇ ଦେବେ । କିନ୍ତୁ ତା ହେଲ ନାହିଁ । ରାଣୀ ତା'ହାତ ଧରି ଦରବାରରୁ ବାହାରି-ଗଲେ । ରାଜା ଏକାବେଳେକେ ସ୍ତବ୍ଧ ହୋଇଗଲେ,

ରାଜା ॥ ରାଣୀ, ଯାଅନି । ତାକୁ ନେଇଯାଅନି । ତା' ମୁଣ୍ଡ ମୋ'ର ଦରକାର । ( ଟିକିଏ ରହି ) ତା'ହେଲେ ଜାତୀୟ ସଙ୍ଗୀତ ଗାଇବ କିଏ ? ଠିକ୍ ଅଛି, ମୁଁ ନିଜେ ଗାଇବ ।

ଜାତୀୟ ସଙ୍ଗୀତ ( ରାଜା ଗାଇବେ )

ଓଟ ପରି ଜୀବ ନାହିଁରେ ଭାଇ,
ଶାନ୍ତି ଭୁ ପାଇବୁ ଯା' ଓଟ ହୋଇ ।

କିନ୍ତୁ ଇଏ କ'ଣ ? ଚାରିଆଡ଼ୁ ମାଡ଼ି ଆସୁଚନ୍ତି ପଲ ପଲ ହୋଇ ଲୋକ । ହାତ ମୁଠା କରି ଉପରକୁ ଟେକା ହୋଇଚି । ସେମାନଙ୍କ ଭିତରେ ମନ୍ତ୍ରୀ, ସେନାପତି, ସାଧବ, କଟୁଆଳ, ଦେହରକ୍ଷୀ, ସମସ୍ତେ ଅଛନ୍ତି । କିନ୍ତୁ ସେମାନେ ଓଟମୁହାଁ ନୁହନ୍ତି କି ପିଠିରେ ସେମାନଙ୍କର କୁଜ ନାହିଁ । ସେମାନଙ୍କ ମୁହଁରେ ଆଉ ଗୋଟିଏ ଗୀତ । ସମସ୍ତେ ଏକ ସ୍ୱରରେ, ଏକ ଲୟରେ ଗାଉଥାନ୍ତି ।

ବିପ୍ଳବର ଗୀତ ( ସମସ୍ତେ ଗାଇବେ )

ସମସ୍ତେ ॥ ଓଟଠାରୁ ହୀନ ଜୀବ ନାହିଁରେ ଭାଇ,
ପାରିବୁନି କିଣାସିଙ୍କୁ ଆଉ ସହିବାଇ ।

ଆମେ ସବୁ ଆସିଅଛୁଁ ତାଡ଼ଳ ବାଳରୁ,
ଟାଣି ଆଣ ସେ ରାଜାକୁ ତା' ସିଂହାସନରୁ ।

ରାଜାଙ୍କରତ ଅକଲ ଗୁଡୁମ୍ । ସେ କ'ଣ କହିବେ କିଛି ଭାବିପାରୁନଥିଲେ । କିନ୍ତୁ ସିଂହାସନରୁ ଟାଣି-ଆଣିବା କଥା ଶୁଣି ସେ ଅସ୍ଥିର ରହିପାରିଲେ ନାହିଁ । ଗୋଟାଏ କୁଦାରେ ମଞ୍ଚା ଉପରକୁ ଚଢ଼ି, ସିଂହାସନରେ ଖପ୍ କରି ବସି ପଡ଼ିଲେ । ସିଂହାସନରେ ବସିଲା ପରଠୁ ତାଙ୍କର ଟିକିଏ ଦମ୍ଭ ଆସିଲା । ସେତେବେଳକୁ ସମସ୍ତେ ସିଂହାସନ ଚାରିପାଖରେ ଘେରି ଯାଇଥିଲେ । ନିରଂଜନ ଦେବୀଙ୍କୁ ସିଂହାସନ ପଛରୁ ଉଠେଇ ଆଣି କଡ଼େଇ କରି ଠିଆ ହୋଇଥାଏ । ରାଣୀ ଅନ୍ୟ-ମାନଙ୍କର ନେତୃତ୍ୱ ନେଉଥିଲେ । ରାଜା ଘେରିଥିବା ଲୋକମାନଙ୍କୁ ଗହିରେଇକି ଦେଖିଲେ,

ରାଜା ॥ ଇଏ କ'ଣ ! ଇଏତ ସବୁ ମଣିଷ ମୁହାଁ । ମୋ' ଓଟମୁହାଁ-ମାନେ କୁଆଡେ଼ ଗଲେ ? ହତ୍ୟାକର ଏ ମଣିଷମୁହାଁ-ମାନଙ୍କୁ । ପ୍ରତ୍ୟେକ ମସ୍ତକର ମୂଲ୍ୟ ତିରିଶ ହଜାର ସ୍ୱର୍ଣ୍ଣ ମୁଦ୍ରା ।

କଥାଟା ଶୁଣି ସମସ୍ତେ ହୋ'ହୋ' କରି ହସି ଉଠିଲେ । ଯେମିତି ରାଜା ଗୋଟାଏ ଘର କଉତୁକିଆ କଥା ସେମାନଙ୍କୁ ଶୁଣଉଥିଲେ !

ରାଜା ॥ ହସ ବନ୍ଦକର । ମୁଁ କହୁଛି, ହସ ବନ୍ଦକର ।

ନିରଂଜନ ॥ ରାଜକୋଷଟା ଖାଲି ହୋଇଯିବ ରାଜା ! ରାଜ୍ୟଟା ସାରା ସମସ୍ତେ ମଣିଷ ପାଲଟି ଗଲେଣି ।

ରାଣୀ ॥ ଆଉ ଯେତେ ଚେଷ୍ଟା କଲେ ବି, ପାଦତଳେ ଆମକୁ ଚାପି ରଖି ପାରିବେନି ।

ମନ୍ତ୍ରୀ ॥ ଡେରି କରୁଛ କାହିଁକି ? ତାକୁ ଟାଣି ଆଣ ସିଂହାସନରୁ !

ରାଜାଙ୍କର ଆଉ ଲଢ଼ିବାର ବାଟ ବନ୍ଦ । ଚାରିପାଖରୁ ଲୋକ ମାଡ଼ି ଆସୁଛନ୍ତି, ସିଂହାସନ ଦଖଲ କରିବା-ପାଇଁ । ରାଜା ସିଂହାସନରେ ଜୋର୍ କରି ବସି ପଡ଼ିଲେ । ସିଂହାସନ ହାତ ଦୁଇଟାକୁ ଜୋର୍ କରି ଜାବୁଡ଼ି ଧରିଲେ । ଆଉ ସେମିତ ଜୋରରେ କହିବାକୁ ଲାଗିଲେ, ଯେମିତ କିଛି ହୋଇନି ।

ରାଜା ॥ ପାରିବନି । ମୋତେ ଏଠୁ କେହି ହଟେଇ ପାରିବନି । ମୁଁ ରାଜା, ଏ ସିଂହାସନ ମୋ'ର ।

ସମସ୍ତେ ॥ ଟାଣିଆଣ, ଟାଣିଆଣ !

ରାଜା ॥ ଟାଣିଲ ! ଟାଣିଲ ଦେଖିବା !

ଲୋକମାନେ ରାଜାକୁ ସିଂହାସନରୁ ଭିଡ଼ି ଆଣି ତଳେ ପକେଇଦବାକୁ ବସିଛନ୍ତି । ଏଣେ ରାଜା ସିଂହାସନକୁ ଜାବୁଡ଼ି ଧରିଆ'ନ୍ତି । କିନ୍ତୁ ଏତେ ଲୋକଙ୍କ ଆଗରେ ରାଜାତ ଏକା ! ଶେଷ ବେଳକୁ ତାଙ୍କ ବଳ ହାରି ଆସିଲା । ଗୋଟାଏ ଟାଣରେ ସେ ସିଂହାସନରୁ ତଳକୁ ଗଡ଼ି ପଡ଼ିଲେ ମଞ୍ଚ ଉପରକୁ, ପୁଣି ମଞ୍ଚ ଉପରୁ ଗଡ଼ି ଗଡ଼ି ଆସି ଏକାବେଳକେ ତଳେ ମୁହଁ ମାଡ଼ି ପଡ଼ିଲେ । ତାଙ୍କ ଚେତା ବୁଡ଼ିଗଲା । ସମସ୍ତେ ତାଙ୍କ ଚାରିପାଖରେ ଘେରି ଆନନ୍ଦରେ କୋଳାହଳ କରି ଉଠିଲେ । ଏଇ ସମୟରେ ସମସ୍ତଙ୍କ କୋଳାହଳକୁ ଦବେଇ ନିରଂଜନର କଥା ଶୁଣାଗଲା । ସମସ୍ତେ ଚୁପ୍ ଚାପ୍ ହୋଇଗଲେ ।

ନିରଂଜନ ॥ ଭାଇମାନେ, ତମେମାନେ ସମସ୍ତେ ଆଜି ଅଭିଶାପରୁ ମୁକ୍ତ ; ରାଜା ଯାଇଛି । ଆଜି ଗୁମ୍ଫା ଭିତରେ ଲୁଚି ରହିଥିବା ସେଇ ତିନିଜଣ ବାଙ୍କଲୋକ, ସେମାନେ ବି ମୁକ୍ତ ।

ରାଣୀ ନିରଂଜନର ଭାଷଣ ଶୁଣୁଥିଲେ । କିନ୍ତୁ ତାଙ୍କ ମଗଜରେ ଅନ୍ୟ ଚିନ୍ତା ଖେଳୁଥିଲା । ସେ ଖୁବ୍ ଗମ୍ଭୀର ଭାବରେ କ'ଣ ଚିନ୍ତା କରୁଥିଲେ । ନିରଂଜନର ଭାଷଣ

ଶେଷ ହେଲା ପରେ ଚକିତ ମନରେ ସେ ତାଙ୍କ କଥା ପ୍ରକାଶ କଲେ,

ରାଣୀ ॥ କିନ୍ତୁ ସିଂହାସନ ତ ଖାଲି ରହିବ ନାହିଁ !

ନିରଂଜନ ॥ ସିଂହାସନ ଭାଙ୍ଗି ଦିଅ !

ମନ୍ତ୍ରୀ ॥ ତା' କ'ଣ ହୁଏ ! ସିଂହାସନ ରହିବ । ତା' ଉପରେ ଜଣେ କାହାକୁ ବସିବାକୁ ପଡ଼ିବ ।

ଚିନ୍ତାଟା ସମସ୍ତଙ୍କୁ ଘାରିଲା, ଠିକ୍ କଥାତ ! ସିଂହାସନରେ କେହି ନ ବସିଲେ ରାଜ୍ୟ ଚଳିବ କେମିତ ? ରାଜା ନଥାଇ ଫେର୍ ରାଜ୍ୟ ! ତେଣୁ ସେମାନେ ନିଜ ନିଜ ଭିତରେ ନମ୍ର କଣ୍ଠରେ କୁହା କୋହି ହେଲେ । ସମସ୍ତଙ୍କ ମନରେ ସେଇ ଗୋଟିଏ ପ୍ରଶ୍ନ, ଗୋଟିଏ କଥା, କିଏ ବସିବ ? ରାଣୀ ସମସ୍ତଙ୍କ ଆଡ଼କୁ ଥରେ ଥରେ ଅନେଇ ଗଲେ । ସେ ମନେ ମନେ ଜଣେ ଉପଯୁକ୍ତ ଲୋକ ଖୋଜୁଥିଲେ କିନ୍ତୁ କେହି ତାଙ୍କ ମନକୁ ପାଉନଥିଲା । ଘୂରେଘୂରେ ହଠାତ୍ ତାଙ୍କ ଆଖି ଯାଇ ନିରଂଜନ ଉପରେ ପଡ଼ିଲା । ସେ ତା' ଆଡ଼କୁ ଆଗେଇ ଆସିଲେ । ତା' ହାତ ଧରିଲେ ।

ରାଣୀ ॥ ( ନିରଂଜନକୁ ) ତମେ ବସିବ ।

ସମସ୍ତେ ଯେମିତ ଉପଯୁକ୍ତ ଲୋକଟିଏ ପାଇଗଲେ । ଆଉ ଚିନ୍ତା ନାହିଁ, ଦ୍ୱିଧା ନାହିଁ । ତେଣୁ ସମସ୍ତେ ଏକ ବାକ୍ୟରେ ସମସ୍ୱରରେ କହି ଉଠିଲେ,

ସମସ୍ତେ ॥ ହଁ, ତମେ ବସିବ ।

ରାଣୀ ॥ ( ପ୍ରହରୀକୁ ) ଯାଅ, ମୁକୁଟ ନେଇ ଆସ ।

ନିରଂଜନ ॥ ( ଭୟରେ ) ନାଇଁ ନାଇଁ, ମୋତେ ସେ ଝମେଲାରେ ପୂରାନ୍ତୁନି । ( ଦେବାକୁ, ତା'ହାତଧରି ) ଆ' ଝିଅ ଯିବା !

ରାଣୀ ॥ ନାଁ, ତୁମେ ଯାଇପାରିବନି, ଆସ !

ନିରଂଜନ ଦେଖାଇ ହାତ ଧରିଥାଏ । ରାଣୀ ନିରଂଜନ ହାତ ଧରି ପାହାଚ ଚଢ଼ି ମଞ୍ଚ ଉପରକୁ ଉଠିଲେ । ଦେଖା ବି ଟାଣି ହୋଇ ତାଙ୍କ ସାଙ୍ଗରେ ଗଲା । ରାଣୀ ନିରଂଜନକୁ ସିଂହାସନରେ ବସେଇ ଦେଲେ । ତେଣେ ମୂର୍ଚ୍ଛିତ ରାଜାଙ୍କ ମୁଣ୍ଡରୁ ମୁକୁଟ କଢ଼ାଗଲା, ପୋଷାକ କଢ଼ାଗଲା । ନିରଂଜନକୁ ପୋଷାକ ପିନ୍ଧେଇ ତା' ମୁଣ୍ଡରେ ମୁକୁଟ ବାନ୍ଧିଦେଲେ ରାଣୀ । ପାରମ୍ପରିକ ଖାଡରେ ବାଦ୍ୟବୃନ୍ଦ, ଖୀରବାଜା ଭେଷ୍ଣ ତୂରୀ ଇତ୍ୟାଦି ବାଜିଉଠିଲା । ମନ୍ତ୍ରୀ ଜୟଧ୍ୱନି ଦେଲେ । ଅନ୍ୟମାନେ ପାଳି ଧରିଲେ ।

ମନ୍ତ୍ରୀ ॥ ଜୟ ମହାରାଜ ନିରଂଜନପ୍ରତାପଙ୍କର—

ସମସ୍ତେ ॥ ଜୟ !

କଟୁଆଳ ଆଗେଇ ଯାଇ ଦର୍ଶକମାନଙ୍କ ସମ୍ମୁଖରେ ଠିଆହେଲା । ଘୋଷଣା କରିବା ଭଙ୍ଗୀରେ ନୂତନ ସମ୍ବାଦ ପରିବେଷଣ କଲା ।

କଟୁଆଳ ॥ ଆଜିଠାରୁ ଏ ରାଜ୍ୟର ରାଜା ମହାରାଜ ନିରଂଜନ ପ୍ରତାପ । ଧୈର୍ଯ୍ୟ ଧରନ୍ତୁ । ସେ ଆପଣମାନଙ୍କୁ ବାଣୀ ଦେବେ ।

ମନ୍ତ୍ରୀ ॥ ବାଣୀ ଶୁଣ !

ସମସ୍ତେ ॥ ଶୁଣ ବାଣୀ !

କିନ୍ତୁ ନିରଞ୍ଜନ ! ସିଂହାସନରେ ବସିବା ପରଠାରୁ, ତାକୁ ପୋଷାକ ପିନ୍ଧେଇଦେବା, ମୁକୁଟ ବାନ୍ଧିଦେବା, ଏଇ ସବୁ ପ୍ରକ୍ରିୟା ଭିତରେ ସେ ଯେମିତି ଆସ୍ତେ ଆସ୍ତେ ଜଣେ ସାଧାରଣ ମଣିଷରୁ ଏକ ରାଜାରେ ପରିଣତ ହେଉଥିଲା । ଏକ ରାଜକୀୟ ଗମ୍ଭୀରତା ତା' ମୁହଁରୁ ସେଇ ଚିର ପରିଚିତ ହସ ଟିକକ ଛଡ଼ାଇ ନେଇଥିଲା । ସେ ସିଂହାସନରୁ ଉଠି ଠିଆହେଲା । ସମସ୍ତେ ଉଦ୍‌ଗ୍ରୀବ ହୋଇ ତା' କଥା ଶୁଣିବା ପାଇଁ ଅନେଇ ରହିଲେ ।

ନିରଂଜନ ॥ ରଜା ହିସାବରେ ସିଂହାସନରୁ ସିଂହାସନଯାଏଁ ମୋ'ର ବାଣୀ !

କଣ୍ଟୁଆଳ ॥ ଶୁଣ, ଶୁଣ, ମନକର୍ଣ୍ଣ ଦେଇ ଶୁଣ !

ନିରଂଜନ ॥ ମଣିଷମୁଣ୍ଡମାନଙ୍କୁ ନେଇ ରାଜ୍ୟଶାସନ ହୋଇ ପାରେନା । ଯେବେଠୁ ତମେମାନେ ମଣିଷମୁଣ୍ଡ ହୋଇଯାଇଚ । ତେଣୁ ରଜା ହିସାବରେ ମୋ'ର ତୁମ ସମସ୍ତଙ୍କୁ ଆଦେଶ, ଆଜି-ଠାରୁ, ଶାସନର ସୁବିଧାପାଇଁ ସମସ୍ତେ ଗୋଟାଏ ଗୋଟାଏ ଓଟ ମୁଖା ପିନ୍ଧିବେ !

ସମସ୍ତେ ଯେମିତି ଆକାଶରୁ ପଡ଼ିଲେ । ଇଏ କ'ଣ ଶୁଣୁଚନ୍ତି ସେମାନେ ! ଏତେ କଷ୍ଟ କରି ଯାହାକୁ ରଜା କଲେ, ସେ ଫେର୍ ଶେଷକୁ ଏଇଆ କହିଲା ? ନିଜର ଦୁଃଖକୁ ଆଉ ଚାପି ରଖି ପାରିଲେ ନାହିଁ । ନିଜ ନିଜ ଭିତରେ ଚାପା ଗଳାରେ ଗୁଞ୍ଜରି ଉଠିଲେ—

ସମସ୍ତେ ॥ ( ସମସ୍ତଙ୍କୁ ) ଓଟ ମୁଖା ! ଓଟ ମୁଖା !

ରାଣୀ ॥ ଓଟ ମୁଖା !

ନିରଂଜନ ॥ ଏବଂ ରାଣୀ ସେଇ କଣ୍ଢେଇ ହୋଇ ରହିବେ । ତାଙ୍କ ନାଁ ହବ ପୁତ୍ତଳିକା !

ଦୁଃଖରେ, ଲଜରେ, ଅପମାନରେ ରାଣୀଙ୍କର ମୁଣ୍ଡ ତଳକୁ ଝୁଙ୍କି ଗଲା । ସେ ଆଉ ମୁଣ୍ଡଟେକି କାହାକୁ ଚାହିଁ ପାରୁନଥିଲେ । ତେଣୁ ସେ ନିଜ ମନକୁ ମନ କହିଲା ଭଳି କହିଲେ,

ରାଣୀ ॥ ପୁତ୍ତଳିକା !

ନିରଂଜନ ॥ ଗୁମ୍ଫାରେ ରହିଥିବା ସେଇ ତିନିଜଣ ବାଙ୍କ ବ୍ୟକ୍ତିଙ୍କ ମସ୍ତକର ମୂଲ୍ୟ ପ୍ରତ୍ୟେକ ତିରିଶ ହଜାର ସ୍ୱର୍ଣ୍ଣମୁଦ୍ରା, ଜୀବିତ କିମ୍ବା ମୃତ । ନୂଆ ଗୀତ ନୁହେଁ । ସେଇ ପୁରୁଣା ଜାତୀୟ ସଂଗୀତ ଦରବାରରେ ବୋଲାଯିବ । କାଲି

ଉକ୍ତିତାରେ କହେ ରାଜା ସ୍ୱର ନହୋଇ, କହେ ରାଜାନର ହବ । ମୋ'ର ଆଦେଶ ବର୍ତ୍ତମାନ ଜାତୀୟ ସଂଗୀତ ବୋଲ ଯାଉ ।

ସମସ୍ତେ ସେଇ ପୂର୍ବପର ଆଣ୍ଠେଇ ପଡ଼ଲେ । ରାଣୀ କଣ୍ଢେଇର ଆବରଣ ଭିତରକୁ ଫେରିଗଲେ । ସେମାନେ ଜାତୀୟ ସଂଗୀତ ବୋଲିବା ଆରମ୍ଭ କଲେ ।

ଜାତୀୟ ସଂଗୀତ ( ସମସ୍ତେ ଏକଥ ବୋଲିବେ' )

ଓଝପର ଜୀବ ନାହିଁରେ ଭାଇ
ଶାନ୍ତି ତୁ ପାଇବୁ ଯା'ଓଝ ହୋଇ ।
ପିଠିରେ କୁଜଟା କ ମନୋହର ।
ତୋ' ନିଶାଢ଼ ଆଖି ଭାରି ସୁନ୍ଦର ।
କଣ୍ଟା ଝଣ୍ଟା ପିଣ୍ଡୁ ଯା' ଖାଇଯା'
ତାତଲା ବାଲିରେ ଯା' ଶୋଇଯା'
ଓଝ ପରି ଜୀବ ନାହିଁରେ ଭାଇ
କହେ ରାଜା ନର ଯା' ଓଝ ହୋଇ ।

ଯେତେବେଳେ ଜାତୀୟ ସଂଗୀତ ବୋଲି ଯାଉଥିଲା, ସେତେବେଳେ ଦେଖା ଜ'ଣ କରୁଥିଲା ? ଏ ସମୁଦାୟ ଗପରେ ସେଇତ ହେଉଚି ଯାଦୁକରୀ । ସେ ନର ପାଖରେ, ସିଂହାସନ ପାଖରେ ଠିଆ ହୋଇଥିଲା, ଜାତୀୟ ସଙ୍ଗୀତ ଆରମ୍ଭ ହେବା ମାତ୍ରେ ସେ ସିଂହାସନ ପାଖରୁ ଖୁଲି ଆସିଲା, ମଞ୍ଚରୁ ଓହ୍ଲେଇ ଆସିଲା ଧିରେ ଧିରେ । ସେତେବେଳେ ତା' ମୁହଁଟା ଆଦ୍ୟ ଆଷାଢ଼ର ଆକାଶ ପରି ମେଘ ଭାରାକ୍ରାନ୍ତ ଥିଲା, ଯେପରି, ଯେ କୌଣସି ମୁହୂର୍ତ୍ତରେ ବର୍ଷା ହୋଇପାରେ । ସେ ଜାତୀୟ ସଂଗୀତ ବୋଲ୍‌ଥିବା ଲୋକମାନଙ୍କ ମଝିରେ ଧିରେ ଧିରେ ଆଗେଇ ଆସିଲା, ଦର୍ଶକମାନଙ୍କ ଆଡ଼କୁ । ଦର୍ଶକମାନଙ୍କ ଆଗରେ, ଏମାନଙ୍କ ପଛରେ ପହଞ୍ଚି

ସେ ଯେତେବେଳେ ଠିଆ ହେଲା, ସେତେବେଳେ ତା' ଆଖିରୁ ଝର ଝର ହୋଇ ଲୁହ ଝରୁଥିଲା, ସେ ଲୁହ ଯେପରି କେବେ ବନ୍ଦ ହେବନି । ତା' ଓଠ ଥର ଥର କରି କମ୍ପୁଥିଲା ଏବଂ ଏକ ସମୟରେ ସେ କାନ୍ଦିଲା । କାନ୍ଦିଲା ଯେ, କାନ୍ଦିଲା, ସେ କାନ୍ଦ ବନ୍ଦ ହେବାର ନୁହେଁ । ଯେପରି ସମଗ୍ର ଗପର ସାରାଂଶ ତା'ର ଏଇ କାନ୍ଦ, କାନ୍ଦୁ କାନ୍ଦୁ ସେ ବସି ପଡ଼ିଲା ଦର୍ଶକଙ୍କ ଆଗରେ । ଯେପରି ସେ କହିବାକୁ ଚାହୁଁଥିଲା "ମୋ' ମୁହଁରେ ଅଭିବ୍ୟକ୍ତି ଖୋଜୁଥିଲ ସବୁ ! ଏଇ ଦେଖ ! କାନ୍ଦିବା ଛଡ଼ା ଆଉ କ'ଣ ତା ବାକୀ ରହିଲା ।" ଠିକ୍ ସେଇ ସମୟରେ ବିବେକର ବାଣୀ ପରି କାହାର କଣ୍ଠସ୍ୱର ଭାସି ଆସିଲା, ଯେପରି ଖୁବ୍ ଦୂରରୁ କିଏ କହୁଛି । ସେ କଥାରେ ଆଶା ଥିଲା, ଆଶ୍ୱାସନା ଥିଲା, କଥାଟି ହେଉଛି—

କଣ୍ଠ ।। ଦିନେ ନା ଦିନେ ଦେଶୀର କାନ୍ଦ ହସରେ ପରିଣତ ହବ । ଦିନେ ନା ଦିନେ ଗୁମ୍ଫାର ଅନ୍ଧାର ଭିତରେ ପଡ଼ିଥିବା ବନ୍ଦୀମାନେ ମୁକ୍ତ ହେବେ । ଦିନେ ନା ଦିନେ ଓଟମୁହଁ ସବୁ ମଣିଷର ମୁହଁକୁ ରୂପାନ୍ତରିତ ହବ କିମ୍ବା ସେମାନେ ଓଟ ମୁଖା ଫିଙ୍ଗି ଦେଇ ମଣିଷ ହୋଇଯିବେ । କିନ୍ତୁ ସେ ଦିନ କେବେ ଆସିବ, କେବେ ? କେବେ ? କେବେ ?

